# ଓଡ଼ିଆ ଭାଷା : ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ

ପ୍ରଫେସର ବୈଷ୍ଣବ ଚରଣ ସାମଲ

ଭାଷା ଭାବର ବାହକ । ହୃଦୟ ସହିତ ହୃଦୟର ସେତୁ ବନ୍ଧନ କରିଦିଏ ଭାଷା । ଭାଷାକୁ ଛାଡ଼ିଦେଲେ ଗୋଟିଏ ଜାତିର ଅସ୍ତିତ୍ୱ ରହେ ନାହିଁ । ଭାଷା ହିଁ ଜାତିର ପରିଚୟ । ସେହି ପରିଚୟକୁ ନେଇ ଫୁଟିଉଠେ ଜାତିର ସ୍ୱାଭିମାନ । ଯେତେ ଜାତି ସେତେ ଭାଷା । ସେହି ଭାଷାକୁ ନେଇ ଗୋଟିଏ ଜାତି ଭିତରେ ସୃଷ୍ଟି ହୁଏ ସଂହତି । ଏହି ଭାଷା ଠିକ୍ ମାତୃ ଦୁଗ୍ଧ ପରି । ଶିଶୁର ଯେପରି ବଳକାରକ ହୁଏ ମାତୃ ଦୁଗ୍ଧ, ବାହାରର ଗୁଣ୍ଡ ଦୁଗ୍ଧ ନୁହେଁ, ସେହିପରି ମାତୃଭାଷା ହୁଏ ଗୋଟିଏ ଜାତିର ଶକ୍ତି ଓ ସାମର୍ଥ୍ୟର ହେତୁ, ଅନ୍ୟ କୌଣସି ବିଦେଶୀ ଭାଷା ବା ବାହାରର ଭାଷା ନୁହେଁ । ଯେଉଁ ଜାତି ତାର ମାତୃଭାଷାକୁ ଭଲପାଏ ସେହି ଜାତି ହୁଏ ଯଥାର୍ଥ ଜ୍ଞାନୀ, ମାନୀ ଓ ଗୁଣୀ । ବାହାରର ଭାଷାରେ ହୁଏତ ଜଣେ ନିଜକୁ ବଡ଼ ମନେ କରିପାରେ ମାତ୍ର ସିଏ ଜାତି ଅନ୍ତର୍ଗତ ମଣିଷମାନଙ୍କ ହୃଦୟର କଥାକୁ ବୁଝିପାରେ ନାହିଁ । ତା'ସହିତ ଜାତିର ହୋଇଯାଏ ଯୋଜନ ଯୋଜନ ଦୂରତ୍ୱ । ତେଣୁ ମାତୃଭାଷା କାଳେ କାଳେ ଆଦର ଲାଭ କରେ । ସେହି ଭାଷା ଗଢ଼ି ଉଠେ ତା'ର ଇତିହାସ, ସଂସ୍କୃତି, ଚାହାଣି, ଚଳଣି ଓ ଚମକ । ନିର୍ମିତ ହୋଇଯାଏ କେତେ କେତେ ଗ୍ରନ୍ଥ, କେତେ ପୁରାଣ କାବ୍ୟ କବିତା, କେତେ ଲୋକମୁଖର ସାହିତ୍ୟ, କେତେ ନାଟକ ଗଳ୍ପ ଉପନ୍ୟାସ । ମାତୃଭାଷା ହିଁ ଗୋଟିଏ ଜାତିକୁ କରିଦଏ ମହିମାମୟ । ସେହି ଭାଷାକୁ ନେଇ ଗୋଟିଏ ଜାତିର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତକୁ ବିଚାରି ହୁଏ ଓ ବିପର୍ଯ୍ୟୟ ଭିତରୁ ଜାତିର ମୁକ୍ତି ପାଇଁ ପ୍ରେରଣା ଆହରଣ କରିହୁଏ । ଅସଲ କଥା ହେଲା ମାତୃଭାଷା ପ୍ରୀତି । ଯେତେ ଯିଏ ଅନ୍ୟ ଭାଷା ଶିଖୁ, କ୍ଷତି ନାହିଁ । ବରଂ ନାନା ଭାଷାରେ ଦକ୍ଷତା ଅର୍ଜନ ଦ୍ୱାରା ନାନା ଜାତିର ଭାବ ଭାବନା, ଦୃଷ୍ଟି ଓ ଦର୍ଶନ ତୁଳାନତ୍ମକ ଭାବରେ ବିଚାର କରିବା ପାଇଁ ସାମର୍ଥ୍ୟ ପ୍ରକାଶ ପାଏ । କିନ୍ତୁ ଯେଉଁଠି ବିଦେଶୀ ଭାଷାକୁ ଆପଣେଇ ନେଇ ମାତୃଭାଷାକୁ ଏଡ଼େଇ ଦିଆଯାଏ, ମାତୃଭାଷା ପ୍ରତି ନାଶିକା କୁଞ୍ଚନ କରାଯାଏ, ଅନ୍ୟ ବର୍ଗରେ ମାତୃଭାଷାକୁ ଅନ୍ଧକାର ମଧ୍ୟକୁ ଠେଲି ଦିଆଯାଏ, ସେଇଠି ଜାତିର ହୋଇଯାଏ ଅପମୃତ୍ୟୁ । ଜାତିର ଆଉ ନିଜସ୍ୱ ପରିଚୟ ବା ଆଇଡ଼େଣ୍ଟି ରହେ ନାହିଁ । ଆଇଡ଼େଣ୍ଟି ଚାଲିଗଲେ ତାର ସ୍ୱାଭିମାନ ମଧ୍ୟ ଚାଲିଯାଏ । ଓଡ଼ିଆ ଜାତି କିନ୍ତୁ ବଞ୍ଚିଛି, ବଞ୍ଚିବ ମଧ୍ୟ ଭବିଷ୍ୟତରେ । କାରଣ ତାର ଗୋଟାଏ ଭାଷା ଅଛି– ସେଇ ଭାଷା ଜୀଅନ୍ତା ଭାଷା । ସେଇ ଭାଷା ତାର ସମ୍ପତ୍ତି । ସେଇ ସମ୍ପତ୍ତିକୁ ନେଇ ସେ ଧନୀ, ସିଏ ମର୍ଯ୍ୟାଦାବନ୍ତ, ସ୍ୱାଭିମାନରେ ସିଏ ଉଦୀପ୍ତ । ଆଜି ହୁଏତ ଏଇ ଭାଷା କେତେ କେତେ ଚ୍ୟାଲେଞ୍ଜର ସମ୍ମୁଖୀନ ହେଉଛି ତଥାପି ସିଏ ତାର ଶକ୍ତିରେ ସେହି ଚ୍ୟାଲେଞ୍ଜର ଯଥାର୍ଥ ଉତ୍ତର ଦେଉଛି । ସିଏ ଜାଗ୍ରତ ହେଉଛି, ପ୍ରତିଷ୍ଠା ପାଉଛି, ନୂତନ ନୂତନ ଅନ୍ୱେଷା ପଥରେ ଆଗେଇ ଚାଲୁଛି । ଏଇ ହେଉଛି ଓଡ଼ିଆ ଭାଷାର ବୈଶିଷ୍ଟ୍ୟ ।

**ଓଡ଼ିଆ ଭାଷାର ଅତୀତ : ଉନ୍ମେଷ ଓ କ୍ରମ ଉତ୍ତରଣ :**

ଯାହାର ଅତୀତ ଥାଏ, ତାହାର ବର୍ତ୍ତମାନ ଥାଏ, ଥାଏ ମଧ୍ୟ ଭବିଷ୍ୟତ । ଅତୀତ ଯାହାର ମହିମାମୟ, ଐତିହ୍ୟ ମଣ୍ଡିତ, ଇତିହାସ ନିର୍ଜିତ ତାହାର କେବେ ବିଲୟ ହୁଏ ନାହିଁ । ଯେତେ ବିପର୍ଯ୍ୟୟ ଆସିଲେ ତାହା ସକଳ ବାଧାବିଘ୍ନକୁ ଅତିକ୍ରମ କରି ଚକ୍‌ଚକ୍ ହୋଇଉଠେ । ଓଡ଼ିଆ ଜାତିର ଥିଲା ଅତୀତ ଇତିହାସ, ଐତିହ୍ୟ ଓ ପରମ୍ପରା । ଅନେକ ବିପର୍ଯ୍ୟୟ ଆସିଛି । ଖ୍ରୀ.ପୂ ୨୬୧ରେ ଚଣ୍ଡାଶୋକ କଳିଙ୍ଗ ଯୁଦ୍ଧକରି ରକ୍ତ ନଦୀ ବୁହାଇ ଦେଇଛି, ଲକ୍ଷେ ଲୋକଙ୍କୁ ବନ୍ଦୀ କରିଛି । ଏହା ତାଙ୍କର ଧଉଳି ଅନୁଶାସନରୁ ଜଣାଯାଏ । ଏତେ ବିପର୍ଯ୍ୟୟ ସତ୍ତ୍ୱେ ମାତ୍ର ପଞ୍ଚସ୍ତରୀ ବର୍ଷ ପରେ ଏ ଜାତି ପୁଣି ସଂଗଠିତ ହେଲା । କଳିଙ୍ଗ ସମ୍ରାଟ ଖାରବେଳଙ୍କ ନେତୃତ୍ୱରେ ଅପମାନର ପ୍ରତିଶୋଧ ନେଲା । କଳିଙ୍ଗ ହେଲା ସ୍ୱାଧୀନ । କଳିଙ୍ଗର ହେଲା ନବନିର୍ମାଣ । ଗଢ଼ି ଉଠିଲା ଏହାର

ଭାଷା, ସଂସ୍କୃତି, ଧର୍ମଧାରଣା, ସାହିତ୍ୟ ଓ ସର୍ବୋପରି ଉଦାର ମାନବିକତାବୋଧ । ପୁଣି କଳିଙ୍ଗରେ ଶକହୁନ୍ ଶାସନ କଲେ । କଳିଙ୍ଗରୁ ସୃଷ୍ଟି ହେଲା କଂଗୋଦ, ଉତ୍କଳ, କୋଶଳ, ଓଡ୍ର ଓ ପୁଣି ଏସବୁ ମିଶିହେଲା ସୋମବଂଶ ସମୟରୁ ସକଳ ଉତ୍କଳ ଓ ପଞ୍ଚଦଶ ଶତାବ୍ଦୀ ବେଳକୁ ଗଜପତି କପିଳେନ୍ଦ୍ର ଦେବଙ୍କ ସମୟରେ ହେଲା କେବଳ ଓଡ଼ରାଷ୍ଟ୍ରମଣ୍ଡଳ– ଓଡ଼ିଶା । ଏହିପରି କେତେ କେତେ ବିପର୍ଯ୍ୟୟ ଭିତରେ ଓଡ଼ିଶା ଗତି କରିଆସିଲା ଓ ପଞ୍ଚଦଶ ଶତାବ୍ଦୀ ବେଳକୁ ହେଲା ଓଡ଼ିଆ ଭାଷାର ସଦର୍ପ ଅଭିଯାନ । ସଂସ୍କୃତ ବନ୍ଧନରୁ ମୁକ୍ତ ହୋଇ ଏହି ଭାଷା ମାଟି ଆଉ ମଣିଷର ବାସ୍ନାରେ ହେଲା ବାସ୍ନିୟିତ । ଓଡ଼ିଆ ସାହିତ୍ୟ ସକଳ ବିରୋଧ ଓ ପ୍ରତିକୂଳତାକୁ ଅତିକ୍ରମ କରି ବିସ୍ତାରିତ ହେଲା ମାତ୍ର ଓଡ଼ିଶାର ସ୍ୱାଧୀନତା ବିଲୋପ (ଖ୍ରୀ.ଅ.୧୫୬୮) ପରେ ପରେ ଓଡ଼ିଆ ଭାଷା ନାନା ସମସ୍ୟାର ସମ୍ମୁଖୀନ ହେଲା । ବିଶେଷତଃ ୧୮୦୩ ମସିହା ପରେ ଓଡ଼ିଆ ଇଂରାଜୀ ଶାସନାଧୀନ ହେବା ପରେ ପରେ ଓଡ଼ିଆ ଭାଷା ପ୍ରତି ବିପଦ ଘନେଇ ଆସିଲା । ଇଂରାଜୀ ଶିକ୍ଷା ଓ ସଭ୍ୟତା ଯୋଗୁଁ ଯେଉଁ ନୂତନ 'ବାବୁ' ଶ୍ରେଣୀର ଉଦ୍ଭବ ହେଲା । ସେମାନେ ନିଜ ନିଜକୁ ସାହେବ ମନେକଲେ ଓ ସାହେବଙ୍କୁ ନକଲ କରି ସେହି ଭାଷା କହିଲେ, ସୁରାସେବନ କଲେ, ସାକୀ ସମ୍ପର୍କରେ ଆସିଲେ, ଉପଭୋଗୀ ହେଲେ, ଇଂରେଜ ହାକିମଙ୍କ ପଦଲେହନ କଲେ, ମେରୁଦଣ୍ଡହୀନ ହୋଇଗଲେ । ଏମାନଙ୍କ ଆଗରେ ଦେଶ ବଡ଼ ନୁହେଁ, ଭାଷା ବଡ଼ ନୁହେଁ, ବଡ଼ ହୋଇଗଲା ଆପଣା ଆପଣାର ସିଂହାସନ ଓ ଉପଭୋଗ । ତେଣୁ ଓଡ଼ିଆ ଭାଷାର ହେଲା ବିପର୍ଯ୍ୟୟ । ଓଡ଼ିଆ ଭାଷାକୁ ଉଠାଇ ଅନ୍ୟ ଭାଷା ଚଳାଇବାର ମସୁଧା ହେଲା । ମାତ୍ର ସେତେବେଳକୁ କିଛି ଜାତିପ୍ରେମୀ ଓ ଭାଷାପ୍ରେମୀ ବ୍ୟକ୍ତିଙ୍କର ଆବିର୍ଭାବ ଘଟିଲା । ସେମାନଙ୍କର ସଂଘର୍ଷ ବଳରେ ଭାଷା ବଞ୍ଚିଲା ଓ ସେହି ଭାଷାରେ ରଚିତ ହେଲା ଆଧୁନିକ ସାହିତ୍ୟ । ବହୁ ସଂଗ୍ରାମ ଓ ସଂଘର୍ଷ ପରେ ଓଡ଼ିଶା ହେଲା ସ୍ୱତନ୍ତ୍ର ପ୍ରଦେଶ (୧୯୩୬) ଓ ୧୯୪୮ରେ । ୨୬ଟି ଗଡ଼ଜାତ ଏବଂ ୧୯୪୯ରେ ମୟୂରଭଞ୍ଜ ମିଶି ବୃହତ୍ତର ଉତ୍କଳ ପ୍ରଦେଶ ବା ଓଡ଼ିଶା ପ୍ରଦେଶ ଗଠିତ ହେଲା । ଦେଖାଗଲା ସ୍ୱାଧୀନତା ପରେ ଓଡ଼ିଆ ଭାଷା ଅବହେଳିତ ହୋଇ ରହିଗଲା କିଛି ତୁଙ୍ଗନେତା ଓ ପ୍ରଶାସନିକ ଅଧିକାରୀ ତଥା ଶିକ୍ଷାବିତ୍‌ଙ୍କ ଆତ୍ମଚାରିତାକୁ ନେଇ । ତଥାପି ଓଡ଼ିଆ ଭାଷାକୁ ସରକାରୀ ଭାଷା କରିବା ପାଇଁ ସ୍ୱର୍ଗତ ନବକୃଷ୍ଣ ଚୌଧୁରୀ ଯେଉଁ ଆଦଶନାମା ଜାରି କରିଥିଲେ ତାହା କାର୍ଯ୍ୟକାରୀ ହେଲା ନାହିଁ । ହେଲା ନାହିଁ ମଧ୍ୟ ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ମୁଖ୍ୟମନ୍ତ୍ରୀତ୍ୱ କାଳର ଆଦେଶନାମା । ଏବେ ଓଡ଼ିଆ ଭାଷାକୁ ଶାସ୍ତ୍ରୀୟ ମାନ୍ୟତା ଦେବା ପାଇଁ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ ଆଦେଶକ୍ରମେ ଯେଉଁ ବିଶେଷଜ୍ଞ କମିଟି ବସିଲା, ସେହି କମିଟି ଏକ ଦୀର୍ଘ ଐତିହାସିକ ଦଲିଲ ପ୍ରସ୍ତୁତ କଲେ ଓ ଭାରତ ସରକାର ତାହାକୁ ଗ୍ରହଣ କଲେ ଏବଂ ଶେଷରେ ଓଡ଼ିଆ ଭାଷା ଶାସ୍ତ୍ରୀୟ ମାନ୍ୟତା ଲାଭ କଲା । ଶାସ୍ତ୍ରୀୟ ମାନ୍ୟତା ପାଇବାରେ ଓଡ଼ିଆ ଭାଷା ହେଲା ଷଷ୍ଠ ଭାଷା । ଏଥିରେ ଆମେ ନିଶ୍ଚୟ ଆନନ୍ଦିତ ଓ ଗୌରବାନ୍ୱିତ । ତେବେ ଏହି ଶାସ୍ତ୍ରୀୟତା କ'ଣ ? କାହିଁକି ଏ ଭାଷା ଶାସ୍ତ୍ରୀୟ ମାନ୍ୟତା ପାଇଲା ? ଏହାର ଭବିଷ୍ୟତ କ'ଣ ?

**ଓଡ଼ିଆ ଭାଷାର ଅତୀତ : ଏକ ସିଂହାବଲୋକନ :**

ଓଡ଼ିଆ ଜାତିର ଯେମିତି ଅଛି ସୁଦୂର ଅତୀତ, ସେହିପରି ତାର ଭାଷାର ଅଛି ସୁଦୂର ଅତୀତ । ହୁଏତ ଦକ୍ଷିଣ ଭାରତର ଦ୍ରାବିଡ଼ ଗୋଷ୍ଠୀର କିଛିଟା ଅତୀତ ଥିଲା ମାତ୍ର ଇଣ୍ଡୋୟୁରୋପୀୟ ଭାଷାଗୋଷ୍ଠୀରୁ ସୃଷ୍ଟ ପ୍ରାଚୀନ ଭାରତୀୟ ଭାଷାର କ'ଣ ଅତୀତ ଥିଲା ? ଏହି ଭାଷାରୁ ବୈଦିକ ସଂସ୍କୃତ ଭାଷାର ଉଦ୍‌ଭବ ହୋଇ ସେଥିରୁ ମାର୍ଜିତ ସଂସ୍କୃତ ଭାଷାର ହେଲା ସୃଷ୍ଟି । ସେଇ ଭାଷାରେ ରଚିତ ହେଲା କାବ୍ୟ, ନାଟକ, ଦର୍ଶନ, ଯୋଗ ଓ ନାନା ତାତ୍ତ୍ୱିକ ରଚନା । ତାହା କେବେ ଲୋକଙ୍କ ଭାଷା ନଥିଲା । ଲୋକେ ଗୋଟିଏ ଭାଷା କହୁଥିଲେ ନିଶ୍ଚୟ, ତେବେ ସେ ଭାଷା କ'ଣ ? ତାହା କ'ଣ ପାଲି ବା ପ୍ରାକୃତ ନା ଅପଭ୍ରଂଶ ? ନା ଏସବୁ କିଛି ନୁହେଁ, ଆଉ ଗୋଟିଏ ଭାଷା, ଯାହା ଲୋକଙ୍କ ଭିତରେ ଥିଲା ଓ ଲୋକେ ସେହି ଭାଷାରେ କହୁଥିଲେ ? ଆମ୍ଭ ମତରେ ସେଇ କ'ଣ ଗୋଟିଏ ଭାଷାଥିଲା, ଯାହା ସାହିତ୍ୟ ଭିତରକୁ ଯାଇପାରି ନଥିଲା, ଅଥଚ ଲୋକଙ୍କ ଭିତରେ ସମ୍ପର୍କର ସେତୁବନ୍ଧନ କରିଥିଲା । ଏହା ସତ୍ୟ ଯେ ତାହାଥିଲା ଭରତମୁନିଙ୍କ ନାଟ୍ୟଶାସ୍ତ୍ରରେ ଉଲ୍ଲିଖିତ 'ଉଡ୍ରବିଭାଷା' । ଖ୍ରୀଷ୍ଟାବ୍ଦ ଦ୍ୱିତୀୟ ଶତାବ୍ଦୀ ବେଳକୁ, ଅର୍ଥାତ୍ ଭରତମୁନିଙ୍କ ସମୟକୁ ଏହି ଭାଷାଟି ହୁଏତ ଓଡ଼ିଶାର ଜନପଦରେ ପ୍ରଚଳିତ ଥିଲା । ଖ୍ରୀଷ୍ଟପୂର୍ବ ୫୦୦ ବର୍ଷ ବେଳକୁ ବୁଦ୍ଧଦେବ ଯେଉଁ ୬୪ ପ୍ରକାର ଲିପିର କଥା ଉଲ୍ଲେଖ କରିଛନ୍ତି, ସେଥିରେ ଉଡ୍ରଲିପି କଥା ସୂଚିତ । ଅତଏବ ଏଥିରୁ ସ୍ପଷ୍ଟ ହୋଇଯାଉଛି ଯେ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ପରିବ୍ୟାପ୍ତ ଅଞ୍ଚଳ, ଯାହା କଳିଙ୍ଗ ନାମରେ ପରିଚିତ ଥିଲା ତାହାର ଜାନପଦିକ ଭାଷା ଉଡ୍ରଭାଷା । କେହି କେହି ମଧ୍ୟ ଏହାକୁ କାଳିଙ୍ଗୀ ଭାଷା କହିଥାଆନ୍ତି । ସେ ଯାହା ହେଉନା କାହିଁକି ଏ ଭାଷା ଯେ ପ୍ରାଚୀନତମ ଓ ଏହା ଖ୍ରୀ.ପୂ ୫୦୦/୬୦୦ ବର୍ଷ ତଳୁ କ୍ରମ ପ୍ରବାହିତ ହୋଇ ଆସିଥିଲା, ଏଥିରେ ସଂନ୍ଦେହ ନାହିଁ ।

ଖାରବେଳଙ୍କ ହାତୀଗୁମ୍ଫା ଶିଳାଲେଖର ଭାଷାକୁ ଅର୍ଦ୍ଧମାଗଧୀ ପ୍ରାକୃତ କୁହାଯାଏ । ଏହାର ଲିପି ଉଡ୍ର ଲିପି ନୁହେଁ, ବ୍ରାହ୍ମୀଲିପି ମଧ୍ୟ ନୁହେଁ । ଏହାର ଲିପି ବ୍ରାହ୍ମୀପରି ଅନ୍ୟ ଏକ ଲିପି । ଏଥିରେ ଯେଉଁ ସବୁ ଶବ୍ଦ ଅଛି, ବିଭକ୍ତି, ସର୍ବନାମ, କ୍ରିୟା ଇତ୍ୟାଦି ଅଛି ତାହାର ପରିଚୟ ଆମେ ଆଧୁନିକ ଯୁଗରେ ମଧ୍ୟ ପାଉ । ଅନେକ ଶବ୍ଦ ଏବେ ମଧ୍ୟ ଯଥା ରୂପ ପ୍ରଚଳିତ । କେବଳ ଖାରବେଳଙ୍କ ସମୟ ନୁହେଁ । ପରବର୍ତ୍ତୀ କାଳରେ ଶୈଳୋଦ୍ଭବ ବଂଶ, ଭୌମକର ବଂଶ, ସୋମବଂଶ ସମୟରେ ମଧ୍ୟ ଓଡ଼ିଆ ଭାଷାର ପ୍ରୟୋଗ ଦେଖିବାକୁ ମିଳେ । ୧୦୫୧ ଖ୍ରୀଷ୍ଟାବ୍ଦରେ ଖୋଦିତ ଉରଜାମ୍ ଶିଳାଲେଖରୁ ହିଁ ପ୍ରଥମ ଓଡ଼ିଆ ଲିପିର ପରିଚୟ ମିଳିଲା । ଏହା ପରଠାରୁ ଓଡ଼ିଆ ବର୍ତ୍ତୁଳ ଲିପିର ବିକାଶ ଘଟିଛି ଓ ଖୋଦିତ ହୋଇଛି ଗଙ୍ଗବଂଶ, ସୂର୍ଯ୍ୟବଂଶ ରାଜତ୍ୱ କାଳରେ ନାନା ଶିଳାଲେଖ ଓ ତାମ୍ରଲେଖ । ପଞ୍ଚଦଶ ଶତାବ୍ଦୀରେ ତାଳପତ୍ରରେ ସାରଳା ଦାସ ଏହି ଲିପିରେ ଲେଖିଛନ୍ତି ମହାଭାରତ, ଚଣ୍ଡୀପୁରାଣ ଆଦି ନାନା ଗ୍ରନ୍ଥ ଓ ସେହିଠାରୁ ଓଡ଼ିଆ ଭାଷାର ହୋଇଛି ସ୍ୱର୍ଦ୍ଧିତ ଜୟଯାତ୍ରା । ତେବେ ଏହା ମନେ ରଖିବାକୁ ହେବ ଯେ ଗୋଟିଏ ଭାଷା ପ୍ରାୟ ତିନିଶହ/ଚାରିଶହ ବର୍ଷ ଧରି ଲୋକ ମୁଖରେ କଥିତ ହେଲେ ହେଁ ତାର ଲିପିର ଉଦ୍‌ଭାବନ ହୁଏ ଓ ଲିପି ଆସିଗଲା ପରେ ଲିଖିତ ଗ୍ରନ୍ଥ ଓ ସାହିତ୍ୟର ହୁଏ ଉନ୍ମେଷ ଓ ବିକାଶ ।

ଓଡ଼ିଆ ଭାଷାର ପ୍ରାଚୀନତା ଅନସ୍ୱୀ କାର୍ଯ୍ୟ । ଖ୍ରୀ.ଷ୍ଟପୂର୍ବ କାଳରୁ ଓଡ଼ିଶାର ସାଧବମାନେ ସମୁଦ୍ର ପଥରେ ବୋଇତ ଦେଇ ନାନା ଦେଶକୁ ଓ ଦ୍ୱୀପକୁ ବାଣିଜ୍ୟ କରିବାକୁ ଯାଉଥିଲେ । ଜାଭା, ସୁମାତ୍ରା, ବୋର୍ଣ୍ଣିଓ, ସିଂହଳ ଆଦି ନାନା ସ୍ଥାନ ସହିତ ବ୍ରହ୍ମଦେଶ, ଚୀନ, ଯାପାନ ଆଦି ସ୍ଥାନକୁ ଯାଉଥିଲେ । ପଶ୍ଚିମ ପଟରେ କିଟ୍ ଦ୍ୱୀପ ସହିତ ମରିସସ୍, ଏପରିକି ଆମେରିକା ପର୍ଯ୍ୟନ୍ତ ଯାଉଥିଲେ । ସେମାନେ କେବଳ ବାଣିଜ୍ୟ କରୁନଥିଲେ । ନିଜର ସଂସ୍କୃତି, ଧର୍ମଧାରଣା, ଆଚାର ବିଚାର ଓ ଭାଷାକୁ ମଧ୍ୟ ସେସବୁ ସ୍ଥାନରେ ପ୍ରଚାର କରିଦେଉଥିଲେ । ସିଂହଳରୁ ଏହାର ଅନେକ ପ୍ରମାଣ ମିଳିଥାଏ । ସେହିପରି ଜାଭା ବା ଇଣ୍ଡୋନେସିଆରେ ଥିବା 'କ୍ଲିଙ୍ଗ' ଜାତି , ବ୍ରହ୍ମଦେଶରେ ଥିବା 'କଳିଙ୍ଗରାଟ' ଓ 'ଉତ୍କଳରାଟ' ଏହାର ପ୍ରମାଣ ଦେଇଥାଏ । ଏଥିରୁ ମଧ୍ୟ ଜଣାଯାଏ ଯେ ସେକାଳର ଓଡ଼ିଆ ଭାଷା, ଯାହାକୁ ଓଡ୍ର ଭାଷା କୁହାଯାଉଥିଲା । ତାହା ମଧ୍ୟ ବାହାର ଦ୍ୱୀପପୁଞ୍ଜରେ ପ୍ରଭାବ ପକାଇଥିଲା । ବୋଇତ ଯାତ୍ରା ଓ ଅନ୍ୟାନ୍ୟ ଅନେକ ଘଟଣାକୁ ନେଇ ନାନା ଓଷା, ବ୍ରତ ପ୍ରଚଳିତ ହୋଇଥିଲା ଓ ପ୍ରତ୍ୟେକ ଓଷା ଓ ବ୍ରତକୁ ନେଇ କାହାଣୀ ସୃଷ୍ଟି ହୋଇଥିଲା । ସେହି କାହାଣୀକୁ ଲୋକେ ନିଜ ଭାଷାରେ କହୁଥିବେ । ସେହିପରି ଲୋକଙ୍କ ଭିତରେ ନାନା କାହାଣୀ, କବିତା, ଢ଼ଗଢ଼ମାଳି, ପ୍ରବାଦ, ପ୍ରବଚନ ସୃଷ୍ଟି ହୋଇଥିବ । ଏସବୁ ସେହି ଲୋକଙ୍କ ଭାଷାରେ କୁହାଯାଇଥିବ ଓ ଯାହାର ବିବର୍ତ୍ତିତ ରୂପ ଆମେ ପରବର୍ତ୍ତୀ କାଳରେ ଦେଖିବାକୁ ପାଉ । ମାଟିର ମହାକବି ସାରଳା ଦାସ ପ୍ରଥମ କବି, ଯିଏ ଲୋକମୁଖର କାହାଣୀକୁ ଚୟନ କରି ନେଇ ତାଙ୍କ ଗ୍ରନ୍ଥମାନଙ୍କରେ ରୂପ ଦେଇଦେଲେ, ଯାହାକୁ ଆମେ କହୁ ଲୋକ ଉପାଦାନ । ସାରଳା ଦାସଙ୍କ ପରେ ପରେ ଷୋଡ଼ଶ ଶତାବ୍ଦୀରେ ପଞ୍ଚଶଖାଏ ଓଡ଼ିଆ ଭାଷାକୁ ଆହୁରି ଟିକିଏ ମାର୍ଜିତ କରିଦେଲେ । ଜଗନ୍ନାଥ ଦାସଙ୍କ ଭାଗବତର ଭାଷାକୁ ତେଣୁ ଆମେ ମାନକ ଓଡ଼ିଶା ଭାଷା ବୋଲି ସ୍ୱୀକାର କରିନେଲୁ । ଗାଁ ଗାଁରେ ଭାଗବତ ଟୁଙ୍ଗୀ ପ୍ରତିଷ୍ଠା ଲାଭ କରି ସେଠାରେ ଭାଗବତ ବୋଲାଯିବା ଓ ଶୁଣିବାର ଯେଉଁ ପରମ୍ପରାଟିଏ ସୃଷ୍ଟି ହୋଇଗଲା, ତାହା ଓଡ଼ିଆ ଭାଷାର ମର୍ଯ୍ୟାଦା ବୃଦ୍ଧି ଦିଗରେ ପ୍ରଧାନ ଭୂମିକା ଗ୍ରହଣ କଲା ।

ଭାଷା ପରିବର୍ତ୍ତନଶୀଳ । ଏହା ସ୍ଥିର ନୁହେଁ । ପରିବର୍ତ୍ତନ ଅର୍ଥ ନିଜର ମୌଳିକ ସତ୍ତାକୁ ହରାଇ ଦେବା ନୁହେଁ । ପରିବର୍ତ୍ତନ ସମୟରେ ତାହା ଅନ୍ୟାନ୍ୟ ଅନେକ ଭାଷାକୁ ଗ୍ରହଣ କରିନିଏ ଓ କେତେ ମଧ୍ୟ ଅନ୍ୟକୁ ଦାନ କରିଦିଏ । ଓଡ଼ିଆ ଭାଷା ଯେହେତୁ ଏକ ଜୀଅନ୍ତା ଭାଷା ତେଣୁ ତାହା ପରିବର୍ତ୍ତନକୁ ସ୍ୱାଗତ କରିଛି । ଅନ୍ୟ ଭାଷାରୁ କେତେ କେତେ ଶବ୍ଦ ଆହରଣ କରିଆଣିଛି ଓ ତାହାକୁ ନିଜ ଭିତରେ ମିଶାଇ ଦେଇଛି । ସଂସ୍କୃତ ଭାଷା ସହିତ ଏହାର ଅଛି ନିବିଡ଼ ସମ୍ପର୍କ । ତେବେ ଏହା ସଂସ୍କୃତ ପରି ନୁହେଁ । ନିଜର ମୌଳିକ ଦୀପ୍ତିରେ ଦୀପ୍ତିମାନ । ଓଡ଼ିଆ ଭାଷାରେ ପଞ୍ଚଦଶ ଶତାବ୍ଦୀରେ ସାରଳା ଦାସ ଯେଉଁ ମହାଭାରତ ରଚନା କଲେ, ତାହା ଯଥାର୍ଥରେ ଏକ ବିସ୍ମୟ । ଭାରତୀୟ ଭାଷାମାନଙ୍କରେ ରଚିତ ମହାଭାରତ ପୂର୍ଣ୍ଣାଙ୍ଗ ନୁହେଁ । ମାତ୍ର ଓଡ଼ିଆ ଭାଷାରେ ଏହା ୧୮ଟି ପର୍ବ ବିଶିଷ୍ଟ ପୂର୍ଣ୍ଣାଙ୍ଗ ମହାଭାରତ । ଓଡ଼ିଆ ଭାଷାକୁ ଏ ଦୃଷ୍ଟିରୁ ପ୍ରାଚୀନତମ ଭାଷା କହିବାରେ ଯେ ଯଥାର୍ଥତା ଅଛି, ଏଥିରେ ସନ୍ଦେହ ନାହିଁ ।

ଓଡ଼ିଆ ଭାଷା ଏକ ଶାସ୍ତ୍ରୀୟ ଭାଷା । ଶାସ୍ତ୍ରୀୟ ଅର୍ଥ କୌଣସି ଶାସ୍ତ୍ର ଆଧାରିତ ନୁହେଁ । ଏକ ନିୟମ ଓ ଶୃଙ୍ଖଳାବଦ୍ଧ ଭାଷା । ଓଡ଼ିଆ ଭାଷାର ଅଛି ଏକ ଶୃଙ୍ଖଳା, ଏକ ପ୍ରବାହ । ତେଣୁ ଏହାର ପ୍ରାଚୀନତା ସହିତ ଶୃଙ୍ଖଳାକୁ ସମନ୍ୱିତ କରି ଏହାକୁ ଶାସ୍ତ୍ରୀୟ ଭାଷା କୁହାଯିବାରେ ଆଦୌ ବାଧା ନାହିଁ । ଆମେ ଜାଣୁ ଯେ ଭାରତବର୍ଷର କେତେକ ପ୍ରାଦେଶିକ ଭାଷାଠାରୁ ଓଡ଼ିଆ ଭାଷା ପ୍ରାଚୀନତର । ଏହାର ଭାଷା କେବଳ ସମୃଦ୍ଧ ନୁହେଁ । ଶବ୍ଦ ଭଣ୍ଡାର ବିପୁଳ ନୁହେଁ, ଏହାର ସାହିତ୍ୟ ମଧ୍ୟ ବିପୁଳ ।

**ଓଡ଼ିଆ ଭାଷାର ବର୍ତ୍ତମାନ ସ୍ଥିତି :**

ଓଡ଼ିଆ ଭାଷା ପ୍ରାଚୀନ । ପ୍ରାୟ ଅଢ଼େଇ ହଜାର ବର୍ଷ ଧରି ଏହି ଭାଷା ଗତି କରିଆସିଛି । ୧୮୭୦ ମସିହା ବେଳକୁ

ଏ ଭାଷା ମରଣ-ସଂକଟରେ ପଡ଼ିଥିଲା ମାତ୍ର ଏହା ବଞ୍ଚିଗଲା ଏହାର ପ୍ରାଚୀନତା ପାଇଁ, ସାହିତ୍ୟ ପାଇଁ । ଜନ୍ ବୀମ୍ସ ଏ ଭାଷାକୁ ସେଦିନ ସ୍ୱୀକାର କେବଳ କଲେ ନାହିଁ, ପ୍ରମାଣ କରିଦେଲେ ଏ ଭାଷାର ପ୍ରାଚୀନତାକୁ, ଏ ସାହିତ୍ୟର ମର୍ଯ୍ୟାଦାକୁ । ଗୋଟାଏ ବିପୁଳ ଉତ୍ସାହ ସୃଷ୍ଟି ହେଲା ଓଡ଼ିଆ ଭାଷାକୁ ନେଇ । ସେସମୟର ଦେଶପ୍ରାଣ, ଭାଷାପ୍ରାଣ ବ୍ୟକ୍ତିମାନେ ଯଥା : ଗୌରୀଶଙ୍କର ରାୟ, ଫକୀର ମୋହନ ସେନାପତି, କୁଳବୃଦ୍ଧ ମଧୁସୂଦନ ଦାସ, ଗଙ୍ଗାଧର ମେହେର, ନନ୍ଦକିଶୋର ବଳ, ପଣ୍ଡିତ ଗୋପବନ୍ଧୁ ଦାସ ପ୍ରମୁଖ ଯେପରି ଭାବରେ ସ୍ୱଜାତି ପ୍ରୀତି ଓ ମାତୃଭାଷା ପ୍ରୀତିକୁ ପ୍ରତିଷ୍ଠା ଦେବା ପାଇଁ ଆହ୍ୱାନ ଦେଲେ ତାହା ସମଗ୍ର ଜାତିକୁ ଉଦ୍‌ବୁଦ୍ଧ କଲା । ଏହି ଭାଷା ପ୍ରୀତି ସ୍ୱାଧୀନତା ପର୍ଯ୍ୟନ୍ତ ରହିଲା ମାତ୍ର ସ୍ୱାଧୀନତା ପରେ ତାହା କ୍ରମଶଃ ହ୍ରାସ ପାଇବାକୁ ଲାଗିଲା । ଆମେ ହୁଏତ ରାଜନୀତିକ ସ୍ୱାଧୀନତା ଲାଭ କରିଥିଲୁ ମାତ୍ର ସାଂସ୍କୃତିକ ପରାଧୀନତା ଆମକୁ ଅଧିକ ପରିମାଣରେ ଗ୍ରାସ କରି ରଖିଲା । ଅତୀତର ଔପନିବେଶିକ ମାନସିକତା ସେହିପରି ଆଚ୍ଛାନ୍ନ କରି ରଖିଲା । ଏଥିରୁ ମୁକ୍ତ ନ ହେଲେ ଗୋଟିଏ ଜାତିର ଓ ତା ଭାଷାର ମର୍ଯ୍ୟାଦା ପ୍ରତିଷ୍ଠା ହୋଇପାରିବିକି ? ଏହା ହିଁ ବିଚାର କରିବାର କଥା ।

### ଓଡ଼ିଆ ଭାଷାର ଭବିଷ୍ୟତ :

ଆମେ ସାଧାରଣତଃ ବର୍ତ୍ତମାନକୁ ନେଇ ଗର୍ବ କରୁ, ଅନେକ ସ୍ୱପ୍ନ ଦେଖୁ । ମନେ ରଖିବାକୁ ହେବଯେ ଆମେ ଯଦି କେବଳ ବର୍ତ୍ତମାନ ସର୍ବସ୍ୱ ହୋଇଯିବା ତେବେ ଆଦୌ ଭବିଷ୍ୟତକୁ ଆଗେଇ ପାରିବା ନାହିଁ । ଭବିଷ୍ୟତ ଆମର ଲକ୍ଷ୍ୟ, ବର୍ତ୍ତମାନ ଆମର କର୍ମ ଭୂମି, ଅତୀତ ଆମର ସାକ୍ଷୀ । ତେଣୁ ଆମେ ଆମ ମାତୃଭାଷାକୁ ଗୁରୁତ୍ୱ ଦେବା ଉଚିତ । ଯେଉଁ ଯେଉଁ ବିଚ୍ଛିନ୍ନ ଅଞ୍ଚଳରୁ ଆମ ଭାଷା ଲୋପ ପାଇବାକୁ ବସିଲାଣି, ତାହା ପୁନଃ ପ୍ରତିଷ୍ଠା କରିବାକୁ ହେବ । ରାଜ୍ୟ ଭିତରେ ଓଡ଼ିଆ ଭାଷା ପ୍ରତି ଶ୍ରଦ୍ଧା ଉପୁଜାଇବାକୁ ହେବ । ଆମେ ହିଁ ଆମର ନିଜ ବେକରେ କୁରାଢ଼ି ପକାଉଛେ । ଇଂରାଜୀ ମାଧ୍ୟମ ସ୍କୁଲମାନ ଗାଁରୁ ନଗର ପର୍ଯ୍ୟନ୍ତ ବ୍ୟାପିବାରେ ଲାଗିଛି । କିଏ କରୁଛି ? କେତେଜଣ ନ୍ୟସ୍ତସ୍ୱାର୍ଥ ବ୍ୟକ୍ତି ଏହା କରୁନାହାଁନ୍ତି କି ? ଏହାଦ୍ୱାରା ଅର୍ଥ ଲାଳସା ସୃଷ୍ଟି ହେଉ ନାହିଁକି ? ଇଂରାଜୀ ମାଧ୍ୟମ ସ୍କୁଲରେ ପିଲାମାନଙ୍କୁ ପାଠ ପଢ଼େଇବାକୁ ଲୋକେ ଉବୁଡ଼ା ପଡୁ ନାହାଁନ୍ତି କି ? ଏ ଅବସ୍ଥାକୁ କିଏ ପ୍ରତିରୋଧ କରିବ ? ଆମ ଭାଷା ପ୍ରତି ଶ୍ରଦ୍ଧାଶୀଳ ହେଲେ ହିଁ ଆମେ ବିଦେଶୀ ଭାଷାକୁ ପ୍ରତିରୋଧ କରିପାରିବା ଓ ଆମ ନିଜ ଭାଷାର ଉନ୍ନତି କରିପାରିବା । ମାତ୍ର ଏହା ହେଉନାହିଁ । ଯାହା ହେଉଛି ତାହା ପରସ୍ପର ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା । ଇଏ କହୁଛି ସିଏ ଓଡ଼ିଆ ଭାଷାକୁ ଶାସ୍ତ୍ରୀୟ ମାନ୍ୟତା ଦେଇଦେଲା, ସିଏ କହିଛି ସିଏ କରିଦେଲା । ଇଏ ହେଉଛି ଅହଂକାର ସହିତ ଅହଂକାରର ସଂଘର୍ଷ । ଗୀତାଙ୍କ ଭାଷାରେ 'ଅହଙ୍କାର ବମୂଢ଼ାତ୍ମା କର୍ତ୍ତାହମିତିମନ୍ୟତେ' । ଅତୀତରେ ଓଡ଼ିଆ ଭାଷା ପ୍ରତିଷ୍ଠାନ ହୋଇଥିଲା, ଏବେ ମଧ୍ୟ ତାହା କାର୍ଯ୍ୟ କରୁଛି । ପ୍ରକୃତରେ ଏହା କରୁଛି କ'ଣ ? ସେହିପରି ଓଡ଼ିଆ ଭାଷା ପାଇଁ ସାହିତ୍ୟ ଏକାଡ଼େମୀ, ବିବିଧ ସରକାରୀ ବେସରକାରୀ ସାରସ୍ୱତ ଅନୁଷ୍ଠାନ ଓ ବିଶ୍ୱବିଦ୍ୟାଳୟମାନ କ'ଣ କରୁଛନ୍ତି ? କେଉଁଠି ତ ମାତୃଭାଷା ପ୍ରତି ଆଦର ଥିବା ଲକ୍ଷ୍ୟ କରାଯାଉ ନାହିଁ । କେବଳ କ୍ଷମତା ମୋହ, ଅର୍ଥ-ଲାଳସା ।

ଓଡ଼ିଆ ଭାଷା ଶାସ୍ତ୍ରୀୟ ମାନ୍ୟତା ଲାଭ କଲା । ଗୋଟାଏ ଇତିହାସ ପ୍ରସିଦ୍ଧ ଜାତି ପାଇଁ ନିଶ୍ଚୟ ଗୌରବର କଥା । ଏହି ଗୌରବ ଆଉ ବ୍ୟକ୍ତି ବିଶେଷଙ୍କର ନୁହେଁ, ସମଗ୍ର ଜାତିର । ଭାଷାର ଶୃଙ୍ଖଳା ପ୍ରତିଷ୍ଠା ଲାଭ କରୁ, କେତେଜଣଙ୍କ ମର୍ଜିକୁ ନେଇ ତାକୁ ସ୍ୱେଚ୍ଛାଚାରିତା ଆଡ଼କୁ ଠେଲି ଦିଆନଯାଉ । ସ୍ୱତନ୍ତ୍ର ଓଡ଼ିଆ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରାଯାଉ । ଓଡ଼ିଶାରେ ଥିବା ସମସ୍ତ ଆଞ୍ଚଳିକ ଭେଦକୁ ଦୂରକରି ସମସ୍ତଙ୍କୁ ଏକ କରିବାକୁ ହେବ । ଆଞ୍ଚଳିକ ଭାଷାର ବିକାଶ କରାଇ ମୁଖ୍ୟ ଭାଷା ସହିତ ମିଶାଇବାକୁ ହେବ । କେହି ଆଦୌ ଗର୍ବ କରିବା ଉଚିତ ନୁହେଁ ଯେ ସିଏ କରିଦେଲା । ଯେତେ ଯିଏ ଯାହା କଲେ ବା କହିଲେ ମଧ୍ୟ ଗୋଟିଏ ସରକାରର ଇଚ୍ଛାଶକ୍ତି ଉପରେ ସବୁ ନିର୍ଭର କରେ । ଓଡ଼ିଶା ସରକାରଙ୍କର ଇଚ୍ଛାଶକ୍ତି ସକରାତ୍ମକ ଥିଲା ବୋଲି କମିଟି ହେଲା, ଦାବୀ ଉପସ୍ଥାପିତ ହେଲା ଓ କେନ୍ଦ୍ର ସରକାର ତାହାକୁ ଗ୍ରହଣ କଲେ । ଏଥର ଆସନ୍ତୁ ଅହଂକାର ତ୍ୟାଗ କରି ସମସ୍ତଙ୍କ ଭିତରେ ସଂଯୋଗ ସ୍ଥାପନ କରି ଆମ ମାତୃଭାଷାର ବିକାଶ କରିବା ଓ ଏହାକୁ ଏକ ମହିମାମୟ ଭାଷାରେ ପରିଣତ କରି ଆମ ସାହିତ୍ୟ ଓ ସଂସ୍କୃତର ମୂଲ୍ୟବୋଧକୁ ଦର୍ଶାଇଦେବା । ତେବେ ଯାଇ ଓଡ଼ିଆ ଭାଷାର ଶାସ୍ତ୍ରୀୟ ମାନ୍ୟତାକୁ ଲୋକେ ଉପଲବ୍ଧି କରିପାରିବେ । ଓଡ଼ିଆ ଭାଷାକୁ ଗୁରୁତ୍ୱ ଦେବା ସଙ୍ଗେ ସଙ୍ଗେ ଓଡ଼ିଶାରେ ଯେତେ ଯେତେ ଆଞ୍ଚଳିକ ଭାଷା ଅଛି ଓ ଯେତେ ଯେତେ ଆଦିବାସୀ ଭାଷା ଅଛି ସବୁର ନିଜ ନିଜ ପରିସରରେ ବିକାଶ ହେବା ସଂଗେ ସଂଗେ ମୁଖ୍ୟ ଭାଷା ସହିତ ସେସବୁ ଭାଷାର ଶବ୍ଦମାନଙ୍କୁ ମିଶାଇ ଦେଇ ବୃହତ୍ତର ଓଡ଼ିଆ ଭାଷାର ସମୃଦ୍ଧି ଯେ କେତେ ଆବଶ୍ୟକ ତାହା ବେଶି ବୁଝାଇ କହିବାର ନାହିଁ ।

---

ଅବସରପ୍ରାପ୍ତ ପ୍ରଫେସର ତଥା ବିଭାଗୀୟ ମୁଖ୍ୟ
ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟ,
ଶାନ୍ତିନିକେତନ, ପଶ୍ଚିମବଙ୍ଗ
ଅପର୍ଣ୍ଣା ନଗର, ଚାଉଳିଆଗଞ୍ଜ, କଟକ-୭୫୩୦୦୪

# ଓଡ଼ିଆ ଭାଷା: 'ଶାସ୍ତ୍ରୀୟ' ମାନ୍ୟତାର ନେପଥ୍ୟ କଥା

**ଅସିତ ମହାନ୍ତି**

୨୧ ଫେବୃଆରୀ ୨୦୧୪ । ସେଦିନ ସକାଳେ ଓଡ଼ିଶାର ପ୍ରାୟ ସବୁ ସମ୍ବାଦପତ୍ରର ଶୀର୍ଷକରେ ଥିଲା ଗୋଟିଏ ଆନନ୍ଦଦାୟକ ସମ୍ବାଦ– 'ଓଡ଼ିଆ' ପାଇଲା ଶାସ୍ତ୍ରୀୟ ଭାଷାର ମାନ୍ୟତା । ଏହି ମାନ୍ୟତା ପାଇବାରେ ଓଡ଼ିଆ ଦେଶର ଷଷ୍ଠ ଭାଷା ହେଲେ ହେଁ ପ୍ରଥମ ଭାରତୀୟ ଆର୍ଯ୍ୟଭାଷା । କାରଣ, ସଂସ୍କୃତକୁ ବାଦ୍‌ଦେଲେ ଏହି ମାନ୍ୟତା ପାଇଥିବା ଅନ୍ୟ ଚାରିଟିଯାକ ଭାଷା ହେଉଛନ୍ତି ଦ୍ରାବିଡ଼ ଗୋଷ୍ଠୀର । ସେହି ଚାରି ଶାସ୍ତ୍ରୀୟ ମାନ୍ୟତା ପ୍ରାପ୍ତ ଭାଷା ହେଉଛନ୍ତି ତାମିଲ୍, ତେଲଗୁ, କନ୍ନଡ଼ ଓ ମାଲାୟଲମ୍ । ଅନ୍ୟ ଗୁରୁତ୍ୱପୂର୍ଣ୍ଣ ବିଷୟ ହେଉଛି, 'ଓଡ଼ିଆ ଏକ ସ୍ୱତନ୍ତ୍ର ଭାଷା ନୁହେଁ' ବୋଲି ଦିନେ ସ୍ୱର ଉଠାଇଥିଲେ ଯେଉଁ ପ୍ରତିବେଶୀ ବଙ୍ଗଳା ଭାଷାଭାଷୀ କେତେଜଣ  ତାଙ୍କରି ଭାଷାକୁ ପଛରେ ପକାଇ ଓଡ଼ିଆ ପାଇଛି ପ୍ରଥମ ଭାରତୀୟ ଆର୍ଯ୍ୟଭାଷା ଭାବରେ ଶାସ୍ତ୍ରୀୟ ମାନ୍ୟତା ।

ଏହି ସୁସମ୍ବାଦକୁ ଗତ ପ୍ରାୟ ସାତ ମାସ ଧରି ସତୃଷ୍ଣ ନୟନରେ ଅପେକ୍ଷା କରି ରହିଥିଲେ ଚାରିକୋଟିରୁ ଉର୍ଦ୍ଧ୍ୱ ଓଡ଼ିଆ ଭାଷାଭାଷୀ ଲୋକେ ଏବଂ ଆହୁରି ଅନେକ ପ୍ରବାସୀ ଓଡ଼ିଆ । ଦିନ ଯେତିକି ଯେତିକି ବିତୁଥିଲା ଆଶଙ୍କିତ ଅପେକ୍ଷା ସେତିକି ସେତିକି ଅସ୍ୱସ୍ତିକର ବୋଧ ହେଉଥିଲା । ଶେଷରେ ଆସିଲା ସେଇ ସୁଦିନ । 'ଅନ୍ତର୍ଜାତୀୟ ମାତୃଭାଷା ଦିବସ' (୨୧ ଫେବୃଆରୀ)ର ପୂର୍ବ ପୂର୍ବାହ୍ଣରେ କେନ୍ଦ୍ର ସରକାରଙ୍କ ମନ୍ତ୍ରୀ ପରିଷଦ ଓଡ଼ିଆ ଭାଷାକୁ ଶାସ୍ତ୍ରୀୟ ମାନ୍ୟତା ପ୍ରଦାନ କରିବା ସୁପାରିଶକୁ ଅନୁମୋଦନ କରିନେଲେ ।

॥୨॥

ପ୍ରାୟ ପନ୍ଦର ବର୍ଷ ପୂର୍ବର କଥା । ୧୯୯୯ ମହାବାତ୍ୟା ପରେ ପରେ, ରାଜଧାନୀ ଭୁବନେଶ୍ୱରର ରାଜରାସ୍ତାର ଧାରେ ଧାରେ ଦେଖିବାକୁ ମିଳିଥିଲା ଗୋଟିଏ ମଜାଦାର ଦୃଶ୍ୟ । ଗୋଟିଏ ଟ୍ରଲି ରିକ୍ସାରେ ରଙ୍ଗବେରଙ୍ଗ ଶାଢ଼ିର ପସରା ଧରି ଜଣେ ଫେରିବାଲା ସେସବୁକୁ ବୁଲିବୁଲି ବିକୁଥିଲା । ସେହି ଟ୍ରଲି ରିକ୍ସାରେ ବଡ଼ ବଡ଼ ଅକ୍ଷରରେ ଲେଖାଯାଇଥିଲା– 'ବିତି ଯାଇଥିବା ବର୍ଷର ବଳି ପଡ଼ିଥିବା ମାଲ୍ ।'

୨୦୧୩ ବର୍ଷଟି ବିତିଯାଇଥିଲା । କିନ୍ତୁ ସେଇ ବିତିଲା ବର୍ଷରୁ ଯେଉଁ ବିଷୟଟି ବଳି ପଡ଼ିଥିଲା, ତାହା ଥିଲା ଆମ ଓଡ଼ିଆ ଭାଷାକୁ ଶାସ୍ତ୍ରୀୟ ମାନ୍ୟତା ଘୋଷଣା ।

୨୩ ଜୁଲାଇ ୨୦୧୩ରେ କେନ୍ଦ୍ର ସରକାରଙ୍କ ସଂସ୍କୃତି ବିଭାଗ ପକ୍ଷରୁ ଗଠିତ ଭାଷା ବିଶେଷଜ୍ଞ କମିଟି ଓଡ଼ିଆ ଭାଷାକୁ ଶାସ୍ତ୍ରୀୟ ମାନ୍ୟତା ଦେବା ସମ୍ପର୍କରେ ସପକ୍ଷ ସୁପାରିଶ କରିଥିଲେ । ସଂସ୍କୃତି ମନ୍ତ୍ରାଳୟ ପକ୍ଷରୁ ଦିଲ୍ଲୀସ୍ଥିତ ନିଜ ମୁଖ୍ୟ କାର୍ଯ୍ୟାଳୟରେ ସେହି ବିଶେଷଜ୍ଞ କମିଟି ବୈଠକର ଆୟୋଜନ କରିଥିଲେ କେନ୍ଦ୍ର ସାହିତ୍ୟ ଏକାଡେମୀ । ତାହାର ତିନିଦିନ ପରେ ଭୁବନେଶ୍ୱରରେ ଆୟୋଜିତ ଏକ ପୁସ୍ତକ ଉନ୍ମୋଚନ ସଭାରେ କେନ୍ଦ୍ର ସଂସ୍କୃତି ମନ୍ତ୍ରୀ ଶ୍ରୀମତୀ ଚନ୍ଦ୍ରେଶ କୁମାରୀ କାଟୋଚ୍ ଘୋଷଣା କଲେ ଯେ– ବିଶେଷଜ୍ଞ କମିଟିର ସୁପାରିଶକୁ ସଂସ୍କୃତି ମନ୍ତ୍ରାଳୟ ଏକ ସ୍ମାରକପତ୍ର (ମେମୋରାଣ୍ଡମ୍) ରୂପେ କେନ୍ଦ୍ର କ୍ୟାବିନେଟ୍‌କୁ ପଠାଇ ଦେଇଛି । ଓଡ଼ିଆ ଭାଷାକୁ ଶାସ୍ତ୍ରୀୟ ମାନ୍ୟତା ପ୍ରଦାନ ଘୋଷଣା ଆଉ ସପ୍ତାହେ ବା ଖୁବ୍ ବେଶୀରେ ମାସେ ଭିତରେ । ଭାଷା ବିଶେଷଜ୍ଞ କମିଟିର ସପକ୍ଷ ସୁପାରିଶ ନେଇ ସାରା ରାଜ୍ୟ ଖୁସିରେ ବିଭୋର ଥିବାବେଳେ କେନ୍ଦ୍ର ସଂସ୍କୃତି ମନ୍ତ୍ରୀଙ୍କ ସେହି ଉକ୍ତି ସେଦିନ ଅନେକ ଉତ୍ସାହ ସୃଷ୍ଟି କରିଥିଲା । କିନ୍ତୁ ପ୍ରାୟ ସାତମାସ ବିତିବାକୁ ବସିଥିଲେ ମଧ୍ୟ ଶାସ୍ତ୍ରୀୟ ମାନ୍ୟତା ଘୋଷଣା ହୋଇ ନଥିଲା । ସେ ନେଇ ଓଡ଼ିଶାବାସୀଙ୍କ ମଧ୍ୟରେ ପ୍ରକାଶ ପାଇଥିଲା ଗଭୀର ଉଦ୍‌ବେଗ ।

ଏଣେ କିନ୍ତୁ ଶାସ୍ତ୍ରୀୟ ମାନ୍ୟତା ସୁପାରିଶ ଦିନଠାରୁ ଓଡ଼ିଶାରେ ଚାଲିଥିଲା ସମ୍ବର୍ଦ୍ଧନା ଓ ଆତ୍ମବିଜ୍ଞପ୍ତିର ପର୍ବ । ଏହି ଶାସ୍ତ୍ରୀୟ ମାନ୍ୟତାର ଶ୍ରେୟ ନେବାକୁ ସତେଯେମିତି ପ୍ରତିଯୋଗିତା ଚାଲିଥିଲା । ଇଂରାଜୀ ଆପ୍ତବାକ୍ୟରେ ଯାହା ପ୍ରାୟତଃ କୁହାଯାଇଥାଏ, ଯେ 'ସଫଳତାର ପିତା ଅନେକ'– ତାହାହିଁ ଏ କ୍ଷେତ୍ରରେ ପରିଲକ୍ଷିତ ହେଉଥିଲା ।

ଶାସ୍ତ୍ରୀୟ ମାନ୍ୟତା ସୁପାରିଶର ଗୋଟିଏ ଦିନ ପରେ ଭୁବନେଶ୍ୱରର ଆଇ.ଏନ୍.ଟି.ୟୁ.ସି. କାର୍ଯ୍ୟାଳୟଠାରେ ଏକ ସାମ୍ବାଦିକ ସମ୍ମିଳନୀର ଆୟୋଜନ କରିଥିଲେ ରାଜ୍ୟସଭା ସାଂସଦ ଶ୍ରୀ ରାମଚନ୍ଦ୍ର ଖୁଣ୍ଟିଆ । ଗଣମାଧ୍ୟମରେ ପ୍ରକାଶିତ ବିବରଣୀ ଅନୁସାରେ, ସେହି ସାମ୍ବାଦିକ ସମ୍ମିଳନୀରେ ଶ୍ରୀ ଖୁଣ୍ଟିଆଙ୍କ ସହିତ ଉପସ୍ଥିତ ଥିଲେ ପୂର୍ବତନ ମନ୍ତ୍ରୀ ଶେକ୍ ମତଲୁବ୍ ଅଲ୍ଲି, ଓଡ଼ିଆ ଅଧ୍ୟୟନ ଓ ଗବେଷଣା ସଂସ୍ଥାର ସଦସ୍ୟ–ସଚିବ ଶ୍ରୀ ସୁବ୍ରତ ପୃଷ୍ଟି ଓ ଇଞ୍ଜିନିୟର ପ୍ରଭାକର ସ୍ୱାଇଁ । ସେହି ସାମ୍ବାଦିକ ସମ୍ମିଳନୀରେ ସ୍ପଷ୍ଟ ଭାବରେ ଆକ୍ଷେପ କରାଯାଇଥିଲା ଯେ ଓଡ଼ିଆ ଭାଷାର ଶାସ୍ତ୍ରୀୟ ମାନ୍ୟତା ସୁପାରିଶ ପ୍ରସଙ୍ଗରେ ରାଜ୍ୟ ସରକାରଙ୍କର କୌଣସି କୃତିତ୍ୱ ନାହିଁ । ରାଜ୍ୟ ସରକାର କିଛି ନକରି ତୁଚ୍ଛାକୁ ନିଜ ଢୋଲ ପିଟୁଛନ୍ତି । ଅପରପକ୍ଷରେ ଏହି ସୁପାରିଶ ପାଇଁ ରିପୋର୍ଟ ପ୍ରସ୍ତୁତିଠାରୁ ଆରମ୍ଭ କରି ଭାଷା ବିଶେଷଜ୍ଞ କମିଟି ବୈଠକ ପର୍ଯ୍ୟନ୍ତ ଉପସ୍ଥିତ ରହି ଓଡ଼ିଆ ଭାଷାକୁ ଶାସ୍ତ୍ରୀୟ ମାନ୍ୟତା ପ୍ରଦାନ କରିଥିବା ଦର୍ଶାଯାଇ ସଫଳତାର ସମସ୍ତ ଶ୍ରେୟ ଡକ୍ଟର ଦେବୀ ପ୍ରସନ୍ନ ପଟ୍ଟନାୟକଙ୍କୁ ଦିଆଯାଇଥିଲା । ଜୁଲାଇ ୨୪ ତାରିଖ ଦିନ ସେ ଭୁବନେଶ୍ୱର ବିମାନ ବନ୍ଦରରେ ପହଞ୍ଚିବା ବେଳକୁ ସେଠାରେ ଶ୍ରୀ ପୃଷ୍ଟି ଓ ଇଂ. ସ୍ୱାଇଁ ତାଙ୍କୁ ପ୍ରଥମ ଫୁଲମାଳ ଦେଇ ସମ୍ବର୍ଦ୍ଧିତ କରିଥିଲେ । ସେଦିନ ଠାରୁ ଆରମ୍ଭ କରି ଏହି ଲେଖା ଛାପା ପାଇଁ ଯିବା ପର୍ଯ୍ୟନ୍ତ ବିଭିନ୍ନ ସଭାସମିତିରେ ତାଙ୍କୁ ବହୁ ସମ୍ମାନ, ସମ୍ବର୍ଦ୍ଧନା ଓ ଫୁଲମାଳ ଦିଆସରିଛି । ସାଂସଦ ଶ୍ରୀ ଖୁଣ୍ଟିଆଙ୍କୁ ଏହି ଶାସ୍ତ୍ରୀୟମାନ୍ୟତା ସୁପାରିଶର ମୁଖ୍ୟ ପୁରୋଧା, ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକଙ୍କୁ ଏହାର ମୁଖ୍ୟ ବିନ୍ଧାଣି ଏବଂ ସୁବ୍ରତ ପୃଷ୍ଟି ସଦସ୍ୟ–ସଚିବ ଓ ଦେବୀବାବୁ ଅଧ୍ୟକ୍ଷ ଥିବା ଓଡ଼ିଆ ଅଧ୍ୟୟନ ଓ ଗବେଷଣା ସଂସ୍ଥାକୁ ଏହାର ମୁଖ୍ୟ ନିୟାମକ ଭାବରେ ଅଭିହିତ କରାଯାଇଛି ।

॥ ୩ ॥

ଏହା ଅବଶ୍ୟ ସତ୍ୟ ଯେ ୩୦ ମାର୍ଚ୍ଚ ୨୦୧୨ରେ ଅନୁଷ୍ଠିତ ରାଜ୍ୟସଭାର ୨୨୫ତମ ଅଧିବେଶନରେ ସାଂସଦ ଶ୍ରୀ ଖୁଣ୍ଟିଆ ଓଡ଼ିଆ ଭାଷାର ଶାସ୍ତ୍ରୀୟ ମାନ୍ୟତା ସଂପର୍କରେ 'ସ୍ପେଶାଲ ମେନ୍‌ସନ୍' ଜରିଆରେ ପ୍ରଶ୍ନ ଉଠାଇଥିଲେ । ସେତେବେଳେ କେନ୍ଦ୍ର ସରକାରରେ ସଂସ୍କୃତି ମନ୍ତ୍ରୀ ଥିଲେ କୁମାରୀ ଶୈଳଜା । କିନ୍ତୁ ଶ୍ରୀ ଖୁଣ୍ଟିଆଙ୍କ ସେହି ପ୍ରଶ୍ନର ଉତ୍ତରରେ ୨୦ ଏପ୍ରିଲ ୨୦୧୨ରେ ଏକ ଚିଠି ଲେଖି ମନ୍ତ୍ରୀ ସୁଶ୍ରୀ ଶୈଳଜା ଜଣାଇ ଦେଇଥିଲେ ଯେ କୌଣସି ଭାଷାକୁ ଶାସ୍ତ୍ରୀୟ ମାନ୍ୟତା ଦେବାପାଇଁ କେନ୍ଦ୍ର ସରକାର ନିର୍ଦ୍ଦିଷ୍ଟ ମାନକ (କ୍ରାଇଟେରିଆ) ନିର୍ଦ୍ଧାରଣ କରିଛନ୍ତି ଏବଂ ତାହାର ବିଚାର ପାଇଁ ଏକ ଭାଷା ବିଶେଷଜ୍ଞ କମିଟି ମଧ୍ୟ ଗଠିତ ହୋଇଛି। ଓଡ଼ିଆ ଭାଷାକୁ ଏହି ମାନ୍ୟତା ଦେବାପାଇଁ କୌଣସି ବିଧିବଦ୍ଧ ପ୍ରସ୍ତାବ ସଂସ୍କୃତି ମନ୍ତ୍ରାଳୟର ହସ୍ତଗତ ହୋଇନାହିଁ ।

ଏହା ସ୍ପଷ୍ଟ ସୂଚାଏ ଯେ ବିଭିନ୍ନ ଭାରତୀୟ ଭାଷାକୁ ଶାସ୍ତ୍ରୀୟ ମାନ୍ୟତା ପ୍ରଦାନ ସଂପର୍କିତ ସ୍ୱତନ୍ତ୍ର ବିଜ୍ଞପ୍ତି କେନ୍ଦ୍ର ସରକାରଙ୍କ ସ୍ୱରାଷ୍ଟ୍ର ମନ୍ତ୍ରାଳୟ ପକ୍ଷରୁ ୨୦୦୫ଠାରୁ ଜାରି କରାଯାଇଥିଲେ ମଧ୍ୟ ଆମ ଭାଷାର ଶାସ୍ତ୍ରୀୟ ମାନ୍ୟତା ପାଇଁ ଶ୍ରୀ ଖୁଣ୍ଟିଆଙ୍କ ପକ୍ଷରୁ ବା ରାଜ୍ୟ ସରକାରଙ୍କ ପକ୍ଷରୁ ସ୍ୱତନ୍ତ୍ର ପଦକ୍ଷେପ ସେଯାଏଁ ନିଆଯାଇନଥିଲା । ଶ୍ରୀ ଖୁଣ୍ଟିଆଙ୍କର ଉଦ୍ୟମ କେବଳ ରାଜ୍ୟସଭାର ପ୍ରଶ୍ନ ଏବଂ ବିଭିନ୍ନ ପତ୍ର ଲେଖା ମଧ୍ୟରେ ସୀମିତ ଥିଲା । ତାହାର ଉତ୍ତରରେ ୨୦୧୨ ନଭେମ୍ବର ୧୧ ତାରିଖରେ ଓଡ଼ିଆ ଭାଷା ପ୍ରତିଷ୍ଠାନର ତତ୍କାଳୀନ ନିର୍ଦ୍ଦେଶକ ଡକ୍ଟର ହରିହର କାନୁନ୍‌ଗୋ ସାଂସଦ ଶ୍ରୀ ରାମଚନ୍ଦ୍ର ଖୁଣ୍ଟିଆଙ୍କୁ ଚିଠି ଲେଖି ଜଣାଇ ଥିଲେ ଯେ ଓଡ଼ିଆ ଭାଷାର ଶାସ୍ତ୍ରୀୟ ମାନ୍ୟତା ବିଷୟକ ଗବେଷଣାଧର୍ମୀ ସନ୍ଦର୍ଭ ଓ ସ୍ମାରକ ପ୍ରସ୍ତୁତି ଯୋଜନା ଓଡ଼ିଆ ଭାଷା ପ୍ରତିଷ୍ଠାନ ପକ୍ଷରୁ ପ୍ରସ୍ତୁତ ହୋଇସାରିଛି । ୨୦୧୨ ଡିସେମ୍ବର ୧୫ ତାରିଖ ସୁଦ୍ଧା ବିଭିନ୍ନ ଉପବିଷୟ ସଂପର୍କରେ ବିଶେଷଜ୍ଞମାନେ ନିଜ ନିଜର ନିବନ୍ଧ ଦାଖଲ କରିବେ । ତାହାକୁ ନେଇ ଏକ ସ୍ମାରକପତ୍ର ଯଥାଶୀଘ୍ର ପ୍ରସ୍ତୁତ କରାଯାଇ ଅଗ୍ରାଧିକାର ଭିତ୍ତିରେ ଏ ସଂପର୍କରେ ପରବର୍ତ୍ତୀ ପଦକ୍ଷେପ ନିଆଯିବ ।

ବିଭିନ୍ନ ଗତିରୋଧ ମଧ୍ୟ ଦେଇ ସେହି ବିବରଣୀ ପୁସ୍ତକ ପ୍ରସ୍ତୁତ ହେଲା ୩୧ ମେ ୨୦୧୩ରେ ଏବଂ ଜୁନ୍ ୨ ତାରିଖ ଦିନ ରାଜ୍ୟ ସଂସ୍କୃତି ମନ୍ତ୍ରୀ ଶ୍ରୀ ମହେଶ୍ୱର ମହାନ୍ତିଙ୍କୁ ତାହା ଆନୁଷ୍ଠାନିକ ଭାବେ ପ୍ରଦାନ କରାଗଲା । ୩୨୨ ପୃଷ୍ଠାର ମୂଳ ପାଠ ଏବଂ ତଥ୍ୟ, ସାରଣୀ, ମାନଚିତ୍ର ଓ ଫଟୋଚିତ୍ର ଆଦିକୁ ନେଇ ମୋଟ ୪୮୩ ପୃଷ୍ଠାର ସେହି ପୁସ୍ତକର ଶୀର୍ଷକ ଥିଲା ''ସବ୍‌ମିସନ୍ ଫର କ୍ଲାସିକାଲ୍ ଷ୍ଟାଟସ୍ ଅଫ୍ ଓଡ଼ିଆ ଲାଙ୍ଗୁଏଜ୍ ''। ପୁସ୍ତକରେ ମୁଦ୍ରିତ ସୂଚନା ଅନୁସାରେ, ଶ୍ରୀ ସୁବ୍ରତ କୁମାର ପୃଷ୍ଟିଙ୍କ

ସହଯୋଗରେ ଓ ଡକ୍ଟର ଦେବୀ ପ୍ରସନ୍ନ ପଟ୍ଟନାୟକଙ୍କ ତତ୍ତ୍ୱାବଧାୟକତାରେ ପୁସ୍ତକଟି ପ୍ରସ୍ତୁତ ହୋଇଛି । ଏଥିପାଇଁ ଗଠିତ 'କୋର୍ କମିଟି'ରେ ଆବାହକ ଥିଲେ ରିଜିଓନାଲ ଇନଷ୍ଟିଚ୍ୟୁଟ୍ ଅଫ୍ ଏଜୁକେସନ୍‌ର ସହକାରୀ ପ୍ରଫେସର ଡକ୍ଟର ବସନ୍ତ କୁମାର ପଣ୍ଡା, ଏହାର ଭାଷା ସଂପାଦକ ଭାବରେ ଦାୟିତ୍ୱ ନିର୍ବାହ କରିଥିଲେ ଓଡ଼ିଶା ସାହିତ୍ୟ ଏକାଡେମୀର ପୂର୍ବତନ ସଚିବ ତଥା ଅବସରପ୍ରାପ୍ତ ଇଂରାଜୀ ଅଧ୍ୟାପକ ପ୍ରଫେସର ରାଜକିଶୋର ମିଶ୍ର ଏବଂ ଉତ୍କଳ ବିଶ୍ୱବିଦ୍ୟାଳୟର ଇଂରାଜୀ ବିଭାଗ ପ୍ରଫେସର ଶ୍ରୀ ଯତୀନ୍ଦ୍ର କୁମାର ନାୟକ। ପୁଣି ସେହି ସୂଚନା ଅନୁସାରେ, ଦାବିପତ୍ର ପ୍ରସ୍ତୁତି ପାଇଁ ଯେଉଁ ବିଶେଷଜ୍ଞ କମିଟି ଗଠିତ ହୋଇଥିଲା, ତାହାର ଅଧ୍ୟକ୍ଷ ଥିଲେ ଉତ୍କଳ ସଂସ୍କୃତି ବିଶ୍ୱବିଦ୍ୟାଳୟର କୁଳପତି ଏବଂ ତାହାର ଆବାହକ ଓ ସହଆବାହକ ଭାବରେ ଯଥାକ୍ରମେ ଥିଲେ ଓଡ଼ିଆ ଭାଷା ପ୍ରତିଷ୍ଠାନର ନିର୍ଦ୍ଦେଶକ ଓ ଓଡ଼ିଶା ସାହିତ୍ୟ ଏକାଡେମୀର ସଚିବ । ଉତ୍କଳ ସଂସ୍କୃତି ବିଶ୍ୱବିଦ୍ୟାଳୟର ପୂର୍ବତନ କୁଳପତି ପ୍ରଫେସର ଡକ୍ଟର ଅମିୟ କୁମାର ପଟ୍ଟନାୟକ, ଓଡ଼ିଆ ଅଧ୍ୟୟନ ଓ ଗବେଷଣା ସଂସ୍ଥାର ସଦସ୍ୟ ସଚିବ ଶ୍ରୀ ସୁବ୍ରତ କୁମାର ପୃଷ୍ଟି, ଭାରତୀୟ ସଙ୍ଗୀତ ସଂସ୍ଥାନର ଅଧ୍ୟକ୍ଷ ଶ୍ରୀ କୀର୍ତ୍ତନ ନାରାୟଣ ପାଢ଼ୀ ଓ ଓଡ଼ିଶା ସାହିତ୍ୟ ଏକାଡେମୀର ସଦସ୍ୟ ପଣ୍ଡିତ ଅନ୍ତର୍ଯ୍ୟାମୀ ମିଶ୍ର ମଧ୍ୟ ଏଥିରେ ସହଯୋଗ କରିଥିଲେ ।

ପ୍ରାପ୍ତ ତଥ୍ୟ ଅନୁସାରେ, ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ୨୪ ଜୁନ୍ ୨୦୧୩ରେ ଏକ ସ୍ୱତନ୍ତ୍ର ଚିଠି (ଡି.ଓ. ନଂ-ୟୁଏମ୍-୪୧/୨୦୧୩-୮୫) ସହିତ ସେହି ରିପୋର୍ଟକୁ ପଠାଇ ଦେଇଥିଲେ କେନ୍ଦ୍ର ସଂସ୍କୃତି ମନ୍ତ୍ରୀ ଶ୍ରୀମତୀ ଚନ୍ଦ୍ରେଶ କୁମାରୀ କାଟୋଚ୍‌ଙ୍କ ନିକଟକୁ । ସଂସ୍କୃତି ବିଭାଗର ମାନ୍ୟବର ମନ୍ତ୍ରୀ ଶ୍ରୀମତୀ କାଟୋଚ୍‌ଙ୍କ ଦପ୍ତରରେ ତାହା ପହଞ୍ଚିଥିଲା ୨୬ ଜୁନ୍ ୨୦୧୩ରେ । କେନ୍ଦ୍ର ସାହିତ୍ୟ ଏକାଡେମୀ କାର୍ଯ୍ୟାଳୟରେ ଏକାଡେମୀର ସଭାପତି ଶ୍ରୀ ବିଶ୍ୱନାଥ ପ୍ରସାଦ ତିଓ୍ୱାରୀଙ୍କ ଅଧ୍ୟକ୍ଷତାରେ, ସଂସ୍କୃତି ବିଭାଗର ଭାଷା ବିଶେଷଜ୍ଞ କମିଟିର ବୈଠକ ଅନୁଷ୍ଠିତ ହେଲା । ତାହାର ୨୭ ଦିନ ପରେ, ୨୩ ଜୁଲାଇ ୨୦୧୩ରେ ଏବଂ ସେଇ ବୈଠକରେ ହିଁ ହେଲା ଓଡ଼ିଆ ଭାଷାକୁ ଶାସ୍ତ୍ରୀୟ ମାନ୍ୟତା ଦେବାପାଇଁ ସୁପାରିଶ ।

କିନ୍ତୁ ଏସବୁ ସତ୍ତ୍ୱେ ସାଂସଦ ଶ୍ରୀ ଖୁଣ୍ଟିଆ ଭୁବନେଶ୍ୱରର ସାମ୍ବାଦିକ ସମ୍ମିଳନୀରେ କିପରି ଅଭିଯୋଗ କଲେ ଯେ ଓଡ଼ିଆ ଭାଷାକୁ ଶାସ୍ତ୍ରୀୟ ମାନ୍ୟତା ଦେବାପାଇଁ ରାଜ୍ୟ ସରକାର କିଛି ନକରି ତୁଚ୍ଛାକୁ ଢୋଲ ପିଟୁଛନ୍ତି ?

ଏ ପ୍ରଶ୍ନର ଉତ୍ତର ପାଇବା ପାଇଁ ଏହି ଲେଖକ ସୂଚନା ଅଧିକାର ଆଇନ ବଳରେ ଦୁଇଟି ଆବେଦନ କରିଥିଲା– ଗୋଟିଏ କେନ୍ଦ୍ର ସରକାରଙ୍କ ସଂସ୍କୃତି ମନ୍ତ୍ରାଳୟକୁ ଏବଂ ଅନ୍ୟଟି ସଂସ୍କୃତି ବିଭାଗର ନୋଡ଼ାଲ ଏଜେନ୍‌ସି ଭାବରେ କାମ କରୁଥିବା କେନ୍ଦ୍ର ସାହିତ୍ୟ ଏକାଡେମୀକୁ । ଏହି ଦୁଇ ଆବେଦନର ଉତ୍ତରରେ ଯେଉଁ ତଥ୍ୟ କେନ୍ଦ୍ର ସରକାରଙ୍କ ସଂସ୍କୃତି ମନ୍ତ୍ରାଳୟ ପକ୍ଷରୁ ମିଳିଛି, ଓଡ଼ିଆ ଭାଷାର ଶାସ୍ତ୍ରୀୟ ମାନ୍ୟତା ପରିପ୍ରେକ୍ଷୀରେ ତାହା ସବୁ ଓଡ଼ିଆ ଜାଣିବା ନିହାତି ଦରକାର ।

॥ ୪ ॥

ଓଡ଼ିଶା ମୁଖ୍ୟମନ୍ତ୍ରୀଙ୍କ ଜୁନ ୨୪ ତାରିଖର ସ୍ୱତନ୍ତ୍ର ଚିଠି କେନ୍ଦ୍ର ସରକାରଙ୍କ ସଂସ୍କୃତି ମନ୍ତ୍ରାଳୟରେ ୨୬ ତାରିଖ ଦିନ ପହଞ୍ଚିଥିଲେ ମଧ୍ୟ ସାଂସଦ ଶ୍ରୀ ରାମଚନ୍ଦ୍ର ଖୁଣ୍ଟିଆ ଓଡ଼ିଆ ଭାଷାକୁ ଶାସ୍ତ୍ରୀୟ ମାନ୍ୟତା ଦେବାପାଇଁ ସରକାର କିଛି କରିନାହାନ୍ତି ବୋଲି କାହିଁକି କହିଲେ, ତାହା ପଛରେ ରହିଛି ଅନେକ କାରଣ । ସେଥିରୁ ଗୋଟିଏ ହେଉଛି, ରାଜ୍ୟ ସଂସ୍କୃତି ମନ୍ତ୍ରୀ ଶ୍ରୀ ମହେଶ୍ୱର ମହାନ୍ତିଙ୍କୁ ଜୁନ ୨ ତାରିଖରେ ପୂର୍ଣ୍ଣାଙ୍ଗ ରିପୋର୍ଟ ଦିଆଯାଇଥିଲେ ମଧ୍ୟ ମୁଖମନ୍ତ୍ରୀ ତାହାକୁ କେନ୍ଦ୍ର ସଂସ୍କୃତି ମନ୍ତ୍ରୀଙ୍କ ପାଖକୁ ପଠାଇବା ପାଇଁ ନେଇଥିଲେ ଦୀର୍ଘ ୨୨ ଦିନ । ଯେଉଁ ଭାଷାକୁ ନେଇ ସ୍ୱତନ୍ତ୍ର ରାଜ୍ୟ ଭାବେ ଓଡ଼ିଶା ଗଠିତ ଏବଂ ଯେଉଁ ଭାଷା ଚାରିକୋଟିରୁ ଊର୍ଦ୍ଧ୍ୱ ଓଡ଼ିଆଙ୍କର ଆତ୍ମପରିଚିତି ଓ ସ୍ୱାଭିମାନ– ସେହି ଓଡ଼ିଆ ଭାଷାର ଶାସ୍ତ୍ରୀୟ ମାନ୍ୟତା ଦାବିପତ୍ର କାହିଁକି ଏତେ ଦିନ କେନ୍ଦ୍ର ସରକାରଙ୍କ ନିକଟକୁ ପଠାଯାଇ ପାରିଲା ନାହିଁ, ତାହା ଏକ ପ୍ରଶ୍ନ ।

ତେବେ ଗୋଟିଏ ବିଷୟ ଖୁବ ଗୁରୁତ୍ୱପୂର୍ଣ୍ଣ ଯେ ଓଡ଼ିଶା ସରକାରଙ୍କ ପକ୍ଷରୁ ଏହି ରିପୋର୍ଟର ପ୍ରସ୍ତୁତି ଚୂଡ଼ାନ୍ତ ସ୍ଥିତିରେ ଥିବାବେଳେ, ମେ ମାସ ୮ ତାରିଖ ଦିନ ସାଂସଦ ଶ୍ରୀ ଖୁଣ୍ଟିଆ କିଛି ଫଟୋ ଓ ତଥ୍ୟ ଏକାଠି ଗୁନ୍ଥା ହୋଇଥିବା ଏକ ବିବରଣୀର ୫ଟି ନଥି କେନ୍ଦ୍ର ସାହିତ୍ୟ ଏକାଡେମୀର ସଚିବଙ୍କ ନିକଟରେ ଦାଖଲ କରିଦେଲେ ଏବଂ ଓଡ଼ିଆ ଭାଷାକୁ ଶାସ୍ତ୍ରୀୟ ମାନ୍ୟତା ଦେବାପାଇଁ ତୁରନ୍ତ ପଦକ୍ଷେପ ନେବାକୁ ତାଙ୍କୁ ଅନୁରୋଧ କଲେ । ଶ୍ରୀ ଖୁଣ୍ଟିଆ ଜୁନ ୧୦ ତାରିଖ ଦିନ କେନ୍ଦ୍ର ସଂସ୍କୃତି ମନ୍ତ୍ରୀ ଶ୍ରୀମତୀ ଚନ୍ଦ୍ରେଶ କୁମାରୀ କାଟୋଚଙ୍କୁ ମଧ୍ୟ ସେହି ନଥିପତ୍ରର ଏକ ପ୍ରତିଲିପି ସହିତ ଗୋଟିଏ ଦାବିପତ୍ର ଦେଇଥିଲେ । ଶ୍ରୀ ଖୁଣ୍ଟିଆଙ୍କର ସେହି ଚିଠିକୁ ସଂସ୍କୃତି ମନ୍ତ୍ରୀ ଶ୍ରୀମତୀ କାଟୋଚ ବିଭାଗୀୟ ସଚିବଙ୍କ ନିକଟକୁ ପଠାଇଦେଲେ । ପୁଣି ଏକ ସ୍ୱତନ୍ତ୍ର ଚିଠି ସହ ସେ ସେହି

ରିପୋର୍ଟକୁ କେନ୍ଦ୍ର ସାହିତ୍ୟ ଏକାଡେମୀର ସଚିବଙ୍କ ନିକଟକୁ ପଠାଇ ଦେଇ ଭାଷା ବିଶେଷଜ୍ଞ କମିଟି ବୈଠକରେ ତାହାକୁ ଉପସ୍ଥାପିତ କରିବାକୁ ନିର୍ଦ୍ଦେଶ ମଧ୍ୟ ଦେଲେ ।

ଏହିସବୁ କାମ ଖୁବ୍ ଦ୍ରୁତଗତିରେ ହୋଇଥିଲା । ଏହା ପଛରେ ହୁଏତ ଉଦ୍ଦେଶ୍ୟ ଥିଲା, ଯେହେତୁ ଓଡ଼ିଶା ସରକାରଙ୍କର ପୂର୍ଣ୍ଣାଙ୍ଗ ରିପୋର୍ଟ ମେ ମାସ ଶେଷ ସୁଦ୍ଧା ପ୍ରସ୍ତୁତ ହୋଇ ଜୁନ ୨ ତାରିଖ ଦିନ ରାଜ୍ୟ ସଂସ୍କୃତି ମନ୍ତ୍ରୀଙ୍କୁ ହସ୍ତାନ୍ତର କରାସରିଛି, ରାଜ୍ୟ ସରକାରଙ୍କଠାରୁ ଚିଠି ଓ ରିପୋର୍ଟ ଆସି କେନ୍ଦ୍ର ସରକାରଙ୍କ ନିକଟରେ ପହଞ୍ଚିବା ପୂର୍ବରୁ ଓଡ଼ିଆ ଭାଷାର ଶାସ୍ତ୍ରୀୟ ମାନ୍ୟତା ସୁପାରିଶଟିକୁ ପାରିତ କରାଯାଇ ପାରିଲେ ସମସ୍ତ ଶ୍ରେୟ କେନ୍ଦ୍ର ସରକାରଙ୍କୁ ଏବଂ ଶ୍ରୀ ରାମଚନ୍ଦ୍ର ଖୁଣ୍ଟିଆ ଏବଂ ତାଙ୍କ ସହଯୋଗୀମାନଙ୍କୁ ଯିବ । ଏହାର ନିଦର୍ଶନ ମିଳିଥିଲା ଜୁନ ୩ ତାରିଖର ଏକ ଘଟଣାରୁ । ଯେଉଁଦିନ ଓଡ଼ିଶା ସଂସ୍କୃତି ମନ୍ତ୍ରୀ ଭୁବନେଶ୍ୱରଠାରେ ରିପୋର୍ଟଟିକୁ ଆନୁଷ୍ଠାନିକ ଭାବେ ଉନ୍ମୋଚନ କଲେ, ତା' ପରଦିନ, ଅର୍ଥାତ ଜୁନ ୩ ତାରିଖରେ ଦିଲ୍ଲୀସ୍ଥିତ ସାହିତ୍ୟ ଏକାଡେମୀ କାର୍ଯ୍ୟାଳୟରେ ଏକାଡେମୀର ସଚିବଙ୍କୁ ଭେଟିଥିଲେ ସାଂସଦ ଶ୍ରୀ ଖୁଣ୍ଟିଆ । ୨ ତାରିଖ ଦିନ ସଂସ୍କୃତି ମନ୍ତ୍ରୀଙ୍କୁ ପୁସ୍ତକ ଅର୍ପଣ କରାଯିବା ବେଳେ ସେହି ସଭାରେ ଉପସ୍ଥିତ ଥିବା କମିଟି ସଦସ୍ୟ ଶ୍ରୀ ସୁବ୍ରତ ପୃଷ୍ଟି ମଧ୍ୟ ସେତେବେଳେ ଶ୍ରୀ ଖୁଣ୍ଟିଆଙ୍କ ସହିତ ସେଠାରେ ଉପସ୍ଥିତ ଥିଲେ । ''ଜୁନ ୩ ତାରିଖରେ ତାଙ୍କ (ଶ୍ରୀ ଖୁଣ୍ଟିଆଙ୍କ) ସହିତ ମୁଁ ସାହିତ୍ୟ ଏକାଡେମୀ ସଚିବଙ୍କୁ ଭେଟିଥିଲି ଏବଂ ଆମେ ଶୀଘ୍ର ତାରିଖ ଘୋଷଣା କରିବା ପାଇଁ ଅନୁରୋଧ କରିଥିଲୁ'' ବୋଲି ଏକ ଖବରକାଗଜ ଲେଖାରେ ଶ୍ରୀ ପୃଷ୍ଟି ସ୍ୱୀକାର କରିଛନ୍ତି । ଜୁନ ୨୪ରୁ ୨୭ ତାରିଖ ମଧ୍ୟରେ ଭାଷା ବିଶେଷଜ୍ଞ କମିଟିର ବୈଠକ ଅନୁଷ୍ଠିତ ହେବ ବୋଲି ସେଦିନ କୁଆଡ଼େ ସାହିତ୍ୟ ଏକାଡେମୀର ସଚିବ ଡକ୍ଟର କେ. ଶ୍ରୀନିବାସ ରାଓ ସେମାନଙ୍କୁ ପ୍ରତିଶ୍ରୁତି ଦେଇଥିଲେ ବୋଲି ସେହି ଲେଖାରେ ଶ୍ରୀ ପୃଷ୍ଟି ଉଲ୍ଲେଖ କରିଛନ୍ତି ।

ମାତ୍ର ସେମାନଙ୍କର ସେହି ଉଦ୍ଦେଶ୍ୟ ଚରିତାର୍ଥ ହୋଇପାରି ନଥିଲା । ଭାଷା ବିଶେଷଜ୍ଞ କମିଟିର ସଦସ୍ୟମାନଙ୍କର ଉପସ୍ଥିତିକୁ ଦୃଷ୍ଟିରେ ରଖି, କେନ୍ଦ୍ର ସାହିତ୍ୟ ଏକାଡେମୀ ବୈଠକ ପାଇଁ ଚୂଡ଼ାନ୍ତ ତାରିଖ ସ୍ଥିର କରିଥିଲେ ଜୁଲାଇ ୨୩ ତାରିଖକୁ । କେବଳ ସେତିକି ନୁହେଁ, ଭାଷା ବିଶେଷଜ୍ଞ କମିଟିରେ ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକ ଓ ଶ୍ରୀ ସୁବ୍ରତ ପୃଷ୍ଟିଙ୍କୁ ରଖାଯାଉ ବୋଲି ଶ୍ରୀ ଖୁଣ୍ଟିଆ ସାହିତ୍ୟ ଏକାଡେମୀ ସଚିବଙ୍କୁ ସେଦିନ ନିର୍ଦ୍ଦିଷ୍ଟ ଭାବେ ପ୍ରସ୍ତାବ ଦେଇଥିଲେ ମଧ୍ୟ କମିଟିରେ ଦୁହିଁଙ୍କ ମଧରୁ କାହାକୁ ରଖାଯାଇ ନଥିଲା ।

କେନ୍ଦ୍ର ସରକାରଙ୍କ ସଂସ୍କୃତି ମନ୍ତ୍ରାଳୟ ଓ କେନ୍ଦ୍ର ସାହିତ୍ୟ ଏକାଡେମୀଙ୍କଠାରୁ ସୂଚନା ଅଧିକାର ଆଇନ ବଳରେ ମିଳିଥିବା ତଥ୍ୟରୁ ମଧ୍ୟ ଏହା ସାବ୍ୟସ୍ତ ହୋଇଛି । ''ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକ ଭାଷା ବିଶେଷଜ୍ଞ କମିଟିରେ ପ୍ରଥମରୁ ନଥିଲେ ଏହା କ'ଣ ସତ?'' ଏ ପ୍ରଶ୍ନର ଉତ୍ତରରେ ସାହିତ୍ୟ ଏକାଡେମୀର ଜନସୂଚନା ଅଧିକାରୀ ଶ୍ରୀମତୀ ରେଣୁମୋହନ ଭାନ୍ କହିଛନ୍ତି, ''ହଁ'' ।

''ଯଦି ଏହା ସତ, ତେବେ କେଉଁ ସମୟରେ ଓ କେଉଁ ଭାବରେ ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକ ଏହି ବୈଠକରେ ସାମିଲ ହେଲେ ?'' ଏ ପ୍ରଶ୍ନର ଉତରରେ ଶ୍ରୀମତୀ ଭାନ୍ କହିଛନ୍ତି, ''ପୂର୍ବାନୁସୃତ ଧାରା ଅନୁସାରେ, ଆବଶ୍ୟକ ମତେ ଭାଷା ବିଶେଷଜ୍ଞମାନଙ୍କୁ ବୈଠକରେ ଯୋଗଦେବାକୁ ନିମନ୍ତ୍ରଣ କରାଯାଇଥାଏ । ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକ ସେତେବେଳେ ଦିଲ୍ଲୀରେ ଉପସ୍ଥିତ ଥିବାରୁ ତାଙ୍କୁ ଜଣେ ସ୍ୱତନ୍ତ୍ର ନିମନ୍ତ୍ରିତ ବିଶେଷଜ୍ଞ ଭାବରେ ବୈଠକରେ ଯୋଗ ଦେବାକୁ ଅନୁରୋଧ କରାଯାଇଥିଲା ।''

ସୂଚନା ଅଧିକାର ଆବେଦନ ଅନୁସାରେ ମିଳିଥିବା ତଥ୍ୟରୁ ଆହୁରି ମଧ ଜଣାଯାଇଛି ଯେ ସାହିତ୍ୟ ଏକାଡେମୀର ସଭାପତି ଶ୍ରୀ ବିଶ୍ୱନାଥ ପ୍ରସାଦ ତିୱାରୀ ସେଦିନର (୨୩ ଜୁଲାଇ, ୨୦୧୩) ବୈଠକରେ ଅଧ୍ୟକ୍ଷତା କରିଥିଲେ । ଏକାଡେମୀର 'ଷ୍ଟାଫ୍' ଭାବରେ ଉପସ୍ଥିତ ଥିଲେ ସଚିବ ଡକ୍ଟର କେ. ଶ୍ରୀନିବାସ ରାଓ ଓ ଉପ-ସଚିବ ଶ୍ରୀମତୀ ରେଣୁମୋହନ ଭାନ୍ । ଭାଷା ବିଶେଷଜ୍ଞ କମିଟିର ସଦସ୍ୟ ଭାବରେ ଉପସ୍ଥିତ ଥିଲେ ପ୍ରଫେସର ଉଦୟ ନାରାୟଣ ସିଂହ, ଡକ୍ଟର ଅନ୍ୱିତା ଆବ୍ବି, ପ୍ରଫେସର କେ.ଭି.ସୁବ୍ବାରାଓ ଓ ଡକ୍ଟର ପ୍ରକାଶ ଚନ୍ଦ୍ର ପଟ୍ଟନାୟକ ।

''ଜାଣିବାକୁ ମିଳିଛି ଯେ, ଦିଲ୍ଲୀ ବିଶ୍ୱବିଦ୍ୟାଳୟର ପ୍ରଫେସର, ଡକ୍ଟର ପ୍ରକାଶ ଚନ୍ଦ୍ର ପଟ୍ଟନାୟକ କେନ୍ଦ୍ର ସଂସ୍କୃତି ମନ୍ତ୍ରାଳୟ ପକ୍ଷରୁ ସାହିତ୍ୟ ଏକାଡେମୀ ଦ୍ୱାରା ଗଠିତ ମୂଳ ଭାଷା ବିଶେଷଜ୍ଞ କମିଟିର ଜଣେ ସଦସ୍ୟ ନୁହଁନ୍ତି ? ଯଦି ଏହା ସତ, ତେବେ କେଉଁ ପରିସ୍ଥିତିରେ ଓ କେଉଁ ଭାବରେ ତାଙ୍କୁ ଏହି କମିଟିରେ ସାମିଲ କରାଯାଇଥିଲା ?'' ଏ ପ୍ରଶ୍ନର ଉତ୍ତରରେ ସାହିତ୍ୟ ଏକାଡେମୀର ଜନସୂଚନା ଅଧିକାରୀ ଶ୍ରୀମତୀ ଭାନ୍ କହିଛନ୍ତି ''ମୂଳ ଭାଷା ବିଶେଷଜ୍ଞ କମିଟିର ଜଣେ ନିୟମିତ ସଦସ୍ୟ ଦେଶ ବାହାରେ ଥିବାରୁ ଡକ୍ଟର ପ୍ରକାଶ ଚନ୍ଦ୍ର ପଟ୍ଟନାୟକଙ୍କୁ ତାଙ୍କ ସ୍ଥାନରେ ବୈଠକରେ ଯୋଗ ଦେବାକୁ ଡକାଯାଇଥିଲା ।''

କେଉଁ ନିୟମିତ ସଦସ୍ୟ ଏହି ବୈଠକରେ ଯୋଗଦେଇ ପାରି ନଥିଲେ ତାହାର ବିବରଣୀ ମିଳେ ୨୩ ଜୁଲାଇ ୨୦୧୩ରେ ଅନୁଷ୍ଠିତ ଭାଷା ବିଶେଷଜ୍ଞ କମିଟି ବୈଠକ 'ମିନିଟ୍‌ସ'ରୁ । ସେଥିରୁ ସୂଚିତ ଯେ ପ୍ରଫେସର ଗୋପୀଚାନ୍ଦ ନାରଙ୍ଗ, ଡକ୍ଟର ବି.ଏନ. ପଟ୍ଟନାୟକ, ଡକ୍ଟର ଟି.ଏସ୍.କେ. କଣ୍ଣନ ଏହି ବୈଠକରେ ଯୋଗ ଦେଇ ପାରିନଥିଲେ । ସେମାନଙ୍କ ମଧ୍ୟରେ ଡକ୍ଟର ବିବୁଧେନ୍ଦ୍ର ନାରାୟଣ (ବି.ଏନ.) ପଟ୍ଟନାୟକ ଥିଲେ ଏକମାତ୍ର ଓଡ଼ିଆ । ଯେହେତୁ ସେଦିନର ବୈଠକ ଆହୂତ ହୋଇଥିଲା ମୁଖ୍ୟତଃ ଓଡ଼ିଆ ଭାଷାର ଶାସ୍ତ୍ରୀୟ ମାନ୍ୟତାର ବିଚାର ପାଇଁ– ସେହେତୁ ଡକ୍ଟର ବି.ଏନ୍. ପଟ୍ଟନାୟକଙ୍କ ସ୍ଥାନରେ ହିଁ ଓଡ଼ିଆ ଭାଷାବିତ୍ ଭାବରେ ଡକ୍ଟର ପ୍ରକାଶ ଚନ୍ଦ୍ର ପଟ୍ଟନାୟକଙ୍କୁ ବୈଠକକୁ ନିମନ୍ତ୍ରିତ କରାଯାଇଥିଲା ।

ସେହି ବୈଠକର ବିବରଣୀରୁ ସୂଚିତ ଯେ ବରିଷ୍ଠତା ଦୃଷ୍ଟିରୁ ପ୍ରଥମେ ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକଙ୍କୁ ଓଡ଼ିଆ ଭାଷାର ପ୍ରାଚୀନତା ଓ ଇତିହାସ ସଂପର୍କରେ ସୂଚନା ଦେବାକୁ ଅନୁରୋଧ କରାଯାଇଥିଲା । ଦେବୀବାବୁ ସଦସ୍ୟମାନଙ୍କୁ 'ଗୋଟିଏ ରିପୋର୍ଟ' (ଅବଶ୍ୟମ୍ଭାବୀ ଭାବରେ ଶ୍ରୀ ରାମଚନ୍ଦ୍ର ଖୁଣ୍ଟିଆ ଦାଖଲ କରିଥିବା ରିପୋର୍ଟ) ସଂପର୍କରେ ସୂଚିତ କରି, ସେଥିରେ ପ୍ରଦତ୍ତ ଓଡ଼ିଆ ଭାଷାର କ୍ରମବିକାଶ ସଂପର୍କରେ ଅବହିତ କରାଇଥିଲେ ଏବଂ ଉକ୍ତ ରିପୋର୍ଟକୁ ଶାସ୍ତ୍ରୀୟ ମାନ୍ୟତା ପ୍ରଦାନ ସଂପର୍କିତ ଆଲୋଚନାର ଭିତ୍ତି ଭାବରେ ଗ୍ରହଣ କରିବାକୁ ଅନୁରୋଧ କରିଥିଲେ । ଶିଳାଲେଖ, ଫଟୋଚିତ୍ର, ଲୋକସାହିତ୍ୟର ପରଂପରା ଓ ଲୋକସାହିତ୍ୟ, ୩୪ଟି ବ୍ୟଞ୍ଜନ ବର୍ଣ୍ଣ ଓ ୧୬ଟି ସ୍ୱରବର୍ଣ୍ଣ, ପଞ୍ଚଦଶ ଶତାବ୍ଦୀର ସାରଳା ଦାସଙ୍କ ମହାଭାରତ, ବିଲଙ୍କା ରାମାୟଣ ଓ ଚଣ୍ଡୀପୁରାଣ, ଲକ୍ଷ୍ମୀନାରାୟଣ ବଚନିକା ଏବଂ ତା'ର ଅନୁଗାମୀ ଭକ୍ତି ଆନ୍ଦୋଳନର ବ୍ୟାପକତା ସଂପର୍କରେ ସେ ସଦସ୍ୟମାନଙ୍କୁ ସୂଚିତ କରିଥିଲେ ।

ତା'ପରେ ଅନ୍ୟତମ ସଦସ୍ୟା ଡକ୍ଟର ଅନ୍ୱିତା ଆବ୍‌ବି ପ୍ରଫେସର ପ୍ରକାଶ ଚନ୍ଦ୍ର ପଟ୍ଟନାୟକଙ୍କୁ ଓଡ଼ିଆ ଭାଷାର ଇତିହାସ ଓ ପ୍ରାଚୀନତା ସଂପର୍କରେ ଅବଗତ କରାଇବାକୁ ଅନୁରୋଧ କରିଥିଲେ । ତାହାର ଉତ୍ତରରେ ଡକ୍ଟର ପ୍ରକାଶଚନ୍ଦ୍ର ପଟ୍ଟନାୟକ କାଳିଦାସଙ୍କ 'ମେଘଦୂତ'ଠାରୁ ଆରମ୍ଭ କରି ଓଡ଼ିଆ ଲିପିର ବିକାଶ ଓ ଅଭିଲେଖ, ତାଳପତ୍ର ପୋଥି ଓ ପ୍ରାଚୀନ ସାହିତ୍ୟ, ଓଡ଼ିଶାର ରାଜନୈତିକ ଇତିହାସ ଓ ସାହିତ୍ୟ, ପ୍ରାଗୈତିହାସିକ ଶିଳାଚିତ୍ର ଆଦି ସମେତ କେତେକ ସ୍ୱତନ୍ତ୍ର ଶିଳାଲେଖ ସଂପର୍କରେ ଆଲୋକପାତ କରିଥିଲେ । ତା' ସହିତ ସେ ଓଡ଼ିଶାର ସାଂଗୀତିକ ପରଂପରା, ଓଡ଼ିଶୀ ନୃତ୍ୟର ଐତିହ୍ୟ ଏବଂ ବିପୁଳ ଲୋକସାହିତ୍ୟରେ କିପରି ଓଡ଼ିଆ ଭାଷାର ପ୍ରାଚୀନତାର ପ୍ରମାଣ ସନ୍ନିହିତ ତାହା ଦର୍ଶାଇଥିଲେ । ତା' ସହିତ ସେ ପ୍ରାଚୀନ କାଳଠାରୁ ଆରମ୍ଭ କରି ସାଂପ୍ରତିକ କାଳ ପର୍ଯ୍ୟନ୍ତ ଓଡ଼ିଆ ଭାଷାର କ୍ରମିକ ଅଭିଯାତ୍ରା ସଂପର୍କରେ ବିବରଣୀ ସମ୍ୟକ୍ ଭାବେ ଉପସ୍ଥାପିତ କରିଥିଲେ ଏବଂ କହିଥିଲେ ଯେ ଓଡ଼ିଆ ଭାଷା ଶାସ୍ତ୍ରୀୟ ମାନ୍ୟତା ପାଇବାର ସମସ୍ତ ସର୍ତ୍ତରେ ଉତ୍ତୀର୍ଣ୍ଣ ହେଉଛି ।

ଏହା ପରେ ଭାଷା ବିଶେଷଜ୍ଞ କମିଟିର ସଦସ୍ୟମାନେ ଓଡ଼ିଆ ଭାଷାକୁ ଶାସ୍ତ୍ରୀୟ ମାନ୍ୟତା ଦେବାପାଇଁ ସୁପାରିଶ କରିବା ନିମନ୍ତେ ସର୍ବସମ୍ମତ ପ୍ରସ୍ତାବ ଗ୍ରହଣ କରିଥିଲେ ।

।।୫।।

୨୦୧୩ ଜୁଲାଇ ୨୩ ତାରିଖରେ ଅନୁଷ୍ଠିତ ଭାଷା ବିଶେଷଜ୍ଞ କମିଟି ବୈଠକରେ ଓଡ଼ିଆ ଭାଷାକୁ ଶାସ୍ତ୍ରୀୟ ମାନ୍ୟତା ଦେବାପାଇଁ ସୁପାରିଶ କରାଯିବା ଘଟଣାରେ ସାରା ରାଜ୍ୟରେ ଖେଳି ଯାଇଥିଲା ଆନନ୍ଦର ଲହରୀ । ଆମ ଭାଷାର ପ୍ରାଚୀନତା ଓ ଇତିହାସ ସଂପର୍କରେ ଦୃଢ଼ ଯୁକ୍ତି ଦେଇ ଆମ ଭାଷାକୁ ପ୍ରଥମ ବିଜୟ ଦେଇଥିଲେ ଦୁଇ ଓଡ଼ିଆ ଭାଷାବିଶେଷଜ୍ଞ ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକ ଓ ଡକ୍ଟର ପ୍ରକାଶ ଚନ୍ଦ୍ର ପଟ୍ଟନାୟକ । କିନ୍ତୁ ଏହାର ନେପଥ୍ୟରେ ଯେଉଁ ମନ୍ଦ ଖେଳ ଚାଲିଥିଲା, ତାହା ଯେତିକି ଦୁଃଖଦାୟକ, ସେତିକି ଦୁର୍ଭାଗ୍ୟଜନକ ।

ଏହି ଶାସ୍ତ୍ରୀୟ ମାନ୍ୟତା ସୁପାରିଶ ପରେ ପରେ ରାଜ୍ୟସଭା ସାଂସଦ ଶ୍ରୀ ରାମଚନ୍ଦ୍ର ଖୁଣ୍ଟିଆ ଭୁବନେଶ୍ୱରଠାରେ ଏକ ସାମ୍ବାଦିକ ସମ୍ମିଳନୀ ଡାକି କହିଲେ ଯେ ଶାସ୍ତ୍ରୀୟ ମାନ୍ୟତା ପ୍ରସଙ୍ଗରେ ରାଜ୍ୟ ସରକାର କିଛି ନକରି ତୁଚ୍ଛାକୁ ନିଜ ଢୋଲ ପିଟୁଛନ୍ତି । କିନ୍ତୁ ପ୍ରକୃତରେ ସାଂସଦ ଶ୍ରୀ ଖୁଣ୍ଟିଆ ଓ ତାଙ୍କର ସହଯୋଗୀମାନେ କରିଥିଲେ କ'ଣ ?

ସେ କଥା ପ୍ରଥମେ ଆଲୋଚନା କରାଯାଉ ।

ପୂର୍ବରୁ ପ୍ରଦତ୍ତ ସୂଚନା ଅନୁସାରେ, ଏ ଦିଗରେ ପ୍ରଥମ ଉଦ୍ୟମ କରିଥିଲେ ଓଡ଼ିଶା ଲେଖକ ସାମ୍ମୁଖ୍ୟର ସଭାପତି ଶ୍ରୀ ସାତକଡ଼ି ହୋତା । ସେ କେବଳ ଓଡ଼ିଶାର ମୁଖ୍ୟ ଶାସନ ସଚିବ, ଗଣଶିକ୍ଷା ସଚିବ ଓ ଓଡ଼ିଆ ଭାଷା ପ୍ରତିଷ୍ଠାନକୁ ଚିଠି ଲେଖି ନଥିଲେ କେନ୍ଦ୍ର ସରକାରଙ୍କ ସଂସ୍କୃତି ମନ୍ତ୍ରୀଙ୍କୁ ମଧ୍ୟ ଚିଠି ଲେଖି ତାହାର

ନକଲ ରାଜ୍ୟସଭା ସାଂସଦ ଶ୍ରୀ ଖୁଣ୍ଟିଆଙ୍କୁ ଦେଇଥିଲେ । ସେଇଠାରୁ ହିଁ ହୋଇଥିଲା ଏ ବାବଦରେ ପ୍ରଥମ ସଚେତନତାର ଉଦ୍ରେକ ।

ପୂର୍ବରୁ ଆହୁରି ମଧ୍ୟ ସୂଚିତ ହୋଇଛି ଯେ ରାଜ୍ୟ ସରକାରଙ୍କ ପକ୍ଷରୁ ଏ ସଂପର୍କରେ ରିପୋର୍ଟ ପ୍ରସ୍ତୁତି ପ୍ରାୟ ଚୂଡ଼ାନ୍ତ ଅବସ୍ଥାରେ ଥିବାବେଳେ ହିଁ କେନ୍ଦ୍ର ସାହିତ୍ୟ ଏକାଡେମୀରେ ଶ୍ରୀ ଖୁଣ୍ଟିଆ ଦାଖଲ କରିଥିଲେ ତାଙ୍କର ଚୂଡ଼ାନ୍ତ ରିପୋର୍ଟ । ତାହାର ଶୀର୍ଷକ ଥିଲା, ‘‘ମେମୋରାଣ୍ଡମ୍ ସବ୍‌ମିଟେଡ୍ ଟୁ ମିନିଷ୍ଟ୍ରି ଅଫ୍ କଲଚର୍, ଗଭର୍ଣ୍ଣମେଣ୍ଟ ଅଫ୍ ଇଣ୍ଡିଆ ଫର୍ ଗ୍ରାଣ୍ଟିଂ କ୍ଲାସିକାଲ ଷ୍ଟାଟସ୍ ଟୁ ଓଡ଼ିଆ ଲାଙ୍ଗୁଏଜ୍ ।’’ ତାହାର ଉପସ୍ଥାପକ ଭାବରେ ପ୍ରଥମରେ ନାଆଁ ଥିଲା ସାଂସଦ ଶ୍ରୀ ଖୁଣ୍ଟିଆଙ୍କର । ତଳକୁ ତଳ ଥିଲେ ‘ଆଗାମୀ ଶତାବ୍ଦୀ’, ‘କିସ୍ ଫାଉଣ୍ଡେସନ’, ‘ପଲ୍ଲୀବାଣୀ ମିସନ’, ‘କୋରାଇ ମଣ୍ଡଳ ସାହିତ୍ୟ ସଂସଦ’, ‘ଓଡ଼ିଶା ଭାଷା ସୁରକ୍ଷା ଅଭିଯାନ’ ଓ ‘ଶାରଳା ସାହିତ୍ୟ ସଂସଦ’ । କେବଳ ‘ଆଗାମୀ ଶତାବ୍ଦୀ’ର ସଂପାଦକ ଶେକ୍ ମତଲୁବ ଅଲ୍ଲିଙ୍କୁ ଛାଡ଼ିଦେଲେ ଏହିସବୁ ସଂସ୍ଥା ବା ସଂସ୍ଥାର କର୍ମକର୍ତ୍ତାମାନେ ଅଳ୍ପେ ବହୁତେ ସାଂସଦ ଶ୍ରୀ ଖୁଣ୍ଟିଆଙ୍କ ସହିତ ଘନିଷ୍ଠ ଭାବେ ସଂପର୍କିତ । ଶେକ ମତଲୁବ ଅଲ୍ଲି ଏଥିପାଇଁ ଗଠିତ ସଂଗଠନ ସମିତିର ଆବାହକ ଭାବରେ କାର୍ଯ୍ୟ କରୁଥିଲେ ବୋଲି ରିପୋର୍ଟରେ ଉଲ୍ଲେଖ ଅଛି । ଏହି ରିପୋର୍ଟରେ ତାହାର ପ୍ରସ୍ତୁତିର ସମସ୍ତ ଶ୍ରେୟ ସାଂସଦ ଶ୍ରୀ ଖୁଣ୍ଟିଆ ‘ଓଡ଼ିଆ ଅଧ୍ୟୟନ ଓ ଗବେଷଣା ସଂସ୍ଥା’ର ଅଧ୍ୟକ୍ଷ ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକ ଓ ସଦସ୍ୟ-ସଚିବ ଶ୍ରୀ ସୁବ୍ରତ କୁମାର ପୃଷ୍ଟିଙ୍କୁ ଦେଇଛନ୍ତି ।

ତେବେ ସେ ଯାହା ହେଉ ନା କାହିଁକି, ଦାଖଲ ହୋଇଥିବା ଏହି ରିପୋର୍ଟଟି ପ୍ରକୃତରେ କ’ଣ ? ଏହା ସରକାରଙ୍କ ଦ୍ୱାରା ପ୍ରସ୍ତୁତ ଓ କେନ୍ଦ୍ର ସରକାରଙ୍କ ନିକଟକୁ ପ୍ରେରିତ ରିପୋର୍ଟ ଠାରୁ ଭିନ୍ନ କି ?

ଏହାର ସ୍ପଷ୍ଟ ଉତ୍ତର ହେଉଛି- ‘ନା’ । ଦୁଇଟି ଯାକ ରିପୋର୍ଟକୁ ମିଳାଇ ଦେଖିଲେ, ଯେ କେହି ବ୍ୟକ୍ତି ଏହା ସହଜରେ ଅନୁଭବ କରିପାରିବେ ।

॥ ୬ ॥

ଓଡ଼ିଆ ଭାଷାକୁ ଶାସ୍ତ୍ରୀୟ ମାନ୍ୟତା ପ୍ରଦାନ ପାଇଁ ସାଂସଦ ଶ୍ରୀ ରାମଚନ୍ଦ୍ର ଖୁଣ୍ଟିଆ ଭାରତ ସରକାରଙ୍କ ସଂସ୍କୃତି ମନ୍ତ୍ରାଳୟରେ ଯେଉଁ ‘ମେମୋରାଣ୍ଡମ୍’ ଦାଖଲ କରିଛନ୍ତି, ତାହାର ଅଧ୍ୟାୟ ଓ ପୃଷ୍ଠା ସଂଖ୍ୟା ସହ ରାଜ୍ୟ ସରକାରଙ୍କ ରିପୋର୍ଟର ଖୁବ୍ କମ୍ ତାରତମ୍ୟ ରହିଛି। ଗୋଟିଏ ତାରତମ୍ୟ ହେଉଛି ସରକାରଙ୍କ ରିପୋର୍ଟର ଗୋଟିଏ ଅଧ୍ୟାୟ ଶ୍ରୀ ରାମଚନ୍ଦ୍ର ଖୁଣ୍ଟିଆଙ୍କ ରିପୋର୍ଟରେ ୩ଟି ଅଧ୍ୟାୟ ରୂପେ ସ୍ଥାନ ପାଇଛି। ଶ୍ରୀ ଖୁଣ୍ଟିଆ ଦାଖଲ କରିଥିବା ରିପୋର୍ଟରେ ତୃତୀୟ, ଚତୁର୍ଥ ଓ ପଞ୍ଚମ ଅଧ୍ୟାୟ ହେଉଛି- ‘ପ୍ରି ହିଷ୍ଟ୍ରି ଅଫ୍ ଓଡ଼ିଶା’, ‘ଅନ୍‌ବ୍ରୋକନ୍ ହିଷ୍ଟ୍ରି ଅଫ୍ ଓଡ଼ିଶା’ ଓ ‘ମାରିଟାଇମ୍ ହିଷ୍ଟ୍ରି ଅଫ୍ ଓଡ଼ିଶା’ । ଏହି ତିନି ଅଧ୍ୟାୟ ଓଡ଼ିଶା ସରକାରଙ୍କ ରିପୋର୍ଟର ତୃତୀୟ ଅଧ୍ୟାୟରେ ହିଁ ସ୍ଥାନିତ ହୋଇଛି ଏବଂ ତାହାର ନାମକରଣ କରାଯାଇଛି ‘ଅନ୍‌ବ୍ରୋକନ୍ ହିଷ୍ଟ୍ରି ଅଫ୍ ଓଡ଼ିଶା’। ମାତ୍ର ଉଭୟର ଭାଷା ଓ ବିଷୟ ସମାନ।

ବିଶ୍ୱସ୍ତ ସୂତ୍ରର ସୂଚନା ଅନୁସାରେ, ଏହି ଅଧ୍ୟାୟର ଲେଖକ ଡକ୍ଟର ଅମିୟ କୁମାର ପଟ୍ଟନାୟକ ଏବଂ ସେ ଏହି ଅଧ୍ୟାୟର ପାଠ ରାଜ୍ୟ ସରକାରଙ୍କ ରିପୋର୍ଟ ପାଇଁ ସ୍ୱତନ୍ତ୍ର ଭାବରେ ପ୍ରସ୍ତୁତ କରି ଓଡ଼ିଆ ଭାଷା ପ୍ରତିଷ୍ଠାନକୁ ଦେଇଥିଲେ।

ଦୁଇଟିଯାକ ରିପୋର୍ଟର ନଥିପତ୍ରରେ ମଧ୍ୟ ସଂପୂର୍ଣ୍ଣ ସମାନତା ପରିଲକ୍ଷିତ ହୁଏ। ଯାହା ପାର୍ଥକ୍ୟ ରହିଛି ତାହା କେବଳ ନଥିପତ୍ରର କ୍ରମବିନ୍ୟାସରେ। ଉଭୟ ରିପୋର୍ଟର ‘ଆପେଣ୍ଡିକ୍ସ’ ବା ‘ପରିଶିଷ୍ଟ’ ମଧ୍ୟ ପ୍ରାୟ ସମାନ। ତେବେ ଓଡ଼ିଶା ସରକାରଙ୍କ ରିପୋର୍ଟରେ ଶେଷ ପୃଷ୍ଠା ପର୍ଯ୍ୟନ୍ତ ପୃଷ୍ଠାର ସଂଖ୍ୟା ଦିଆଯାଇଥିବା ବେଳେ ଶ୍ରୀ ଖୁଣ୍ଟିଆଙ୍କ ରିପୋର୍ଟରେ ମୂଳ ପାଠ ପରେ ପୃଷ୍ଠାର ସୂଚନା ନାହିଁ। ସମ୍ଭବତଃ ତରବରିଆ ଭାବେ ଦାଖଲ କରାଯାଇଥିବାରୁ ଏପରି ହୋଇଛି ।

କିନ୍ତୁ ଦୁଇଟିଯାକ ରିପୋର୍ଟ ଏପରି ସମାନ ହେଲା କିପରି ? ଏ ସଂପର୍କରେ ଜାଣିବାକୁ ହେଲେ ପ୍ରସଙ୍ଗର ଆହୁରି ଗଭୀରକୁ ଯିବାକୁ ପଡ଼ିବ।

॥ ୭ ॥

ଶ୍ରୀ ସୁବ୍ରତ ପୃଷ୍ଟି ଏକ ସମ୍ବାଦପତ୍ର ଲେଖାରେ ଇତି ମଧ୍ୟରେ କହିଛନ୍ତି, ‘‘୨୦୦୮ ମସିହାରୁ ମୁଁ ଏଥିପାଇଁ ବିଭିନ୍ନ କାର୍ଯ୍ୟକ୍ରମ କରିଥିବାରୁ ଓଡ଼ିଆ ଭାଷା ପ୍ରତିଷ୍ଠାନ ଦ୍ୱାରା ଶାସ୍ତ୍ରୀୟ ମାନ୍ୟତା ପାଇଁ ୨୨.୦୮.୨୦୧୧ରେ ଆହୂତ ବୈଠକରେ ଗଠିତ କମିଟିର ଜଣେ ସଦସ୍ୟ ଭାବରେ (ମୋତେ) ନିଆଯାଇଥିଲା।’’ ସେହି ଲେଖାରେ ଶ୍ରୀ ପୃଷ୍ଟି ଦେଇଥିବା ସୂଚନା ଅନୁସାରେ, ସାଂସଦ ଶ୍ରୀ ଖୁଣ୍ଟିଆ ପରବର୍ତ୍ତୀ କାଳରେ ଏଥିପାଇଁ ଏକ ଆକ୍ସନ କମିଟି ଗଠନ କଲେ ଏବଂ ସେଥିରେ ମଧ୍ୟ ତାଙ୍କୁ ଜଣେ ସଦସ୍ୟ ଭାବରେ ନେଲେ। ତାହାର ଆବାହକ ଶେକ୍ ମତଲୁବ୍ ଅଲ୍ଲିଙ୍କ ଅନୁରୋଧରେ

ଶ୍ରୀ ପୃଷ୍ଟି ତାଙ୍କଦ୍ୱାରା ପ୍ରସ୍ତୁତ ସେହି ଲେଖାକୁ ସେଠାରେ ଏକ ଭିତ୍ତିପତ୍ର ରୂପେ ପ୍ରଦାନ କଲେ। ତାହାକୁ ଶ୍ରୀ ଖୁଣ୍ଟିଆ ୨୪ ନଭେମ୍ବର ୨୦୧୨ରେ କେନ୍ଦ୍ର ସାହିତ୍ୟ ଏକାଡେମୀରେ ଦାଖଲ କରିଦେଇଥିଲେ। ମାତ୍ର ତାହା ବିଧିବଦ୍ଧ ଭାବରେ ପ୍ରସ୍ତୁତ ରିପୋର୍ଟ ନଥିବାରୁ ୧୯ ଡିସେମ୍ବରରେ କେନ୍ଦ୍ର ସାହିତ୍ୟ ଏକାଡେମୀ କାର୍ଯ୍ୟାଳୟରେ ବସିଥିବା ଭାଷା ବିଶେଷଜ୍ଞ କମିଟି ତାହାକୁ ଗ୍ରହଣ କରିନଥିଲେ। ସେଦିନର ବୈଠକରେ ପ୍ରସଂଗଟି ଉତ୍‌ଥାପିତ ହୋଇଥିଲେ ମଧ୍ୟ ସେ ସଂପର୍କରେ ଆଲୋଚନା କରାଯାଇ ନଥିଲା। ଓଡ଼ିଆ ଭାଷାର ପ୍ରାଚୀନତା ଓ ଇତିହାସ ଏବଂ କ୍ରମାଗତ ସାହିତ୍ୟିକ ବିକାଶ ଓ ସ୍ୱାତନ୍ତ୍ୟ ସଂପର୍କରେ ଏକ ବିଶଦ ରିପୋର୍ଟର ଆବଶ୍ୟକତା ରହିଛି ବୋଲି ବିଶେଷଜ୍ଞ କମିଟି ମତ ଦେଇଥିଲେ। ସୂଚନା ଅଧିକାର ବଳରେ ଏହି ଲେଖକ ପାଇଥିବା ସେହି ବୈଠକର ବିବରଣୀ (ମିନିଟ୍‌ସ)ରେ ଏ ସଂପର୍କରେ ଉଲ୍ଲେଖ ଅଛି। ବିଶିଷ୍ଟ ଓଡ଼ିଆ ଭାଷାବିତ୍ ଡକ୍ଟର ବି.ଏନ୍. ପଟ୍ଟନାୟକ ସେହି ବୈଠକରେ ଉପସ୍ଥିତ ଥିଲେ ।

ଏହାର ପ୍ରାୟ ପାଞ୍ଚମାସ ପରେ, ୨୦୧୩ ମେ ମାସ ୮ ତାରିଖରେ କେନ୍ଦ୍ର ସାହିତ୍ୟ ଏକାଡେମୀରେ ଏବଂ ତାହାର ଗୋଟିଏ ଦିନ ପରେ ମେ ୧୦ ତାରିଖ ଦିନ କେନ୍ଦ୍ର ସଂସ୍କୃତି ମନ୍ତ୍ରୀଙ୍କ ନିକଟରେ ସାଂସଦ ଶ୍ରୀ ଖୁଣ୍ଟିଆ ଆଉ ଗୋଟିଏ ରିପୋର୍ଟ ଦାଖଲ କଲେ। ଆଶ୍ଚର୍ଯ୍ୟଜନକ ଯେ ସେହି ରିପୋର୍ଟ ଓ ରାଜ୍ୟ ସରକାରଙ୍କ ରିପୋର୍ଟ ମୂଳତଃ ପ୍ରାୟ ଏକ– ଯାହା ସଂପର୍କରେ ଏହି ଲେଖାରେ ପୂର୍ବରୁ ଆଲୋଚନା କରାଯାଇଛି।

ଦୁଇଟି ରିପୋର୍ଟ– ଗୋଟିଏ ରାଜ୍ୟ ସରକାରଙ୍କ ଦ୍ୱାରା ଗଠିତ ଭାଷା ବିଶେଷଜ୍ଞ ଓ ଭାଷା ସଂପାଦକମାନଙ୍କ ଦ୍ୱାରା ପ୍ରସ୍ତୁତ ଏବଂ ଅନ୍ୟଟି ସାଂସଦ ଶ୍ରୀ ରାମଚନ୍ଦ୍ର ଖୁଣ୍ଟିଆ ଓ ଅନ୍ୟ କେତୋଟି ସଂସ୍ଥା ଦ୍ୱାରା ଉପସ୍ଥାପିତ। କିନ୍ତୁ ଦୁଇଟି ଯାକ ମୂଳତଃ ପ୍ରାୟ ସମାନ ! ଏହା ସମ୍ଭବ ହେଲା କିପରି ?

॥ ୮ ॥

ଏ ସଂପର୍କରେ ପଛରୁ ପଛକୁ ଗଲେ ଜଣାଯାଏ ଯେ ଓଡ଼ିଆ ଭାଷାର ଶାସ୍ତ୍ରୀୟ ମାନ୍ୟତା ପାଇଁ ୨୨ ଅଗଷ୍ଟ ୨୦୧୧ରେ ଭୁବନେଶ୍ୱରଠାରେ ବସିଥିବା ପ୍ରଥମ ବୈଠକ ପରେ ଓଡ଼ିଆ ଭାଷା ପ୍ରତିଷ୍ଠାନ ଏ ବାବଦରେ ଦ୍ୱିତୀୟ ବୈଠକର ଆୟୋଜନ କରିଥିଲା ୧୪ ଅକ୍ଟୋବର ୨୦୧୧ରେ। ତୃତୀୟ ବୈଠକ ଅନୁଷ୍ଠିତ ହେଲା ୨୨ ନଭେମ୍ବରରେ। ଏହାର ପାଖାପାଖି ବର୍ଷକ ପରେ ୨୬ ଅକ୍ଟୋବର ୨୦୧୨ରେ ଗଠିତ ହେଲା ଏକ ଭାଷା ବିଶେଷଜ୍ଞ କମିଟି ଓ ଉପଦେଷ୍ଟା କମିଟି। କିନ୍ତୁ ନୂଆ ସଂସ୍କୃତି ମନ୍ତ୍ରୀ ଭାବରେ ମହେଶ୍ୱର ମହାନ୍ତି ଦାୟିତ୍ୱ ନେବାପରେ ହିଁ କାର୍ଯ୍ୟକ୍ରମ ତ୍ୱରାନ୍ୱିତ ହୋଇଥିଲା। ସେତେବେଳକୁ ୧୯ ଡିସେମ୍ବର ୨୦୧୨ ବୈଠକର ସୁପାରିଶ ଅନୁସାରେ ଓଡ଼ିଆ ଭାଷାର ଶାସ୍ତ୍ରୀୟ ମାନ୍ୟତା ପାଇଁ ଏକ ବିଧିବଦ୍ଧ ଓ ପ୍ରାମାଣିକ ପ୍ରସ୍ତାବ ଦେବାକୁ କେନ୍ଦ୍ର ସଂସ୍କୃତି ମନ୍ତ୍ରାଳୟ ପକ୍ଷରୁ ରାଜ୍ୟ ସରକାରଙ୍କ ନିକଟକୁ ଖବର ଆସିସାରିଥିଲା। ଫଳରେ ଓଡ଼ିଆ ଭାଷା ପ୍ରତିଷ୍ଠାନର ନିର୍ଦ୍ଦେଶକ ଡକ୍ଟର ପ୍ରସନ୍ନ କୁମାର ମହାନ୍ତିଙ୍କ ଆବାହକତ୍ୱ ଏବଂ ଓଡ଼ିଶା ସାହିତ୍ୟ ଏକାଡେମୀର ସଚିବ ଶ୍ରୀ ବିଜୟ କୁମାର ନାୟକଙ୍କ ଯୁଗ୍ମ ଆବାହକତ୍ୱରେ ଗଠିତ ହୋଇଥିଲା ଏକ ସ୍ୱତନ୍ତ୍ର କମିଟି। ସେଥିରେ ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକ, ଶ୍ରୀ କୈଳାଶ ଚନ୍ଦ୍ର ଟିକାୟତ ରାୟ, ଡକ୍ଟର ବସନ୍ତ କୁମାର ପଣ୍ଡା ଓ ଶ୍ରୀ ସାତକଡ଼ି ହୋତା ସଦସ୍ୟ ରହିଥିଲେ। ଭାଷା ସଂପାଦନା ସଦସ୍ୟ ଭାବରେ ସେଥିରେ ଗ୍ରହଣ କରାଯାଇଥିଲା ଅଧ୍ୟାପକ ରାଜକିଶୋର ମିଶ୍ର ଓ ପ୍ରଫେସର ଯତୀନ୍ଦ୍ର କୁମାର ନାୟକଙ୍କୁ। ସେହି ବୈଠକ ଅନୁଷ୍ଠିତ ହୋଇଥିଲା ୨୪ ଜାନୁଆରୀ ୨୦୧୩ରେ। ପରେ ଫେବୃଆରୀ ୮ ତାରିଖରେ ଅନୁଷ୍ଠିତ ଅନ୍ୟ ଏକ ବୈଠକରେ ପଣ୍ଡିତ ଅନ୍ତର୍ଯ୍ୟାମୀ ମିଶ୍ର, ଶ୍ରୀ କୀର୍ତ୍ତନ ନାରାୟଣ ପାଢ଼ୀ ଓ ଶ୍ରୀ ସୁବ୍ରତ କୁମାର ପୃଷ୍ଟିଙ୍କୁ କମିଟିରେ ସଦସ୍ୟ ଭାବେ ଗ୍ରହଣ କରାଗଲା।

ସେତେବେଳକୁ ସାଂସଦ ଶ୍ରୀ ଖୁଣ୍ଟିଆଙ୍କ ଦ୍ୱାରା ସେପ୍ଟେମ୍ବର ୨୦୧୨ରେ ଦାଖଲ ହୋଇଥିବା ପ୍ରଥମ ନଥିପତ୍ର କେନ୍ଦ୍ର ସଂସ୍କୃତି ମନ୍ତ୍ରାଳୟର ଭାଷା ବିଶେଷଜ୍ଞ କମିଟି ଦ୍ୱାରା ପ୍ରତ୍ୟାଖ୍ୟାତ ହୋଇ ସାରିଥିଲା। ତେଣୁ ଓଡ଼ିଆ ଭାଷା ପ୍ରତିଷ୍ଠାନ ପକ୍ଷରୁ ଗଠିତ କମିଟିର ସଦସ୍ୟ ହେବାପରେ, ସେହି ଗୃହୀତ ହୋଇ ନଥିବା ରିପୋର୍ଟଟିକୁ ଏକ ଭିତ୍ତିପତ୍ର ରୂପେ ଗ୍ରହଣ କରିବାକୁ ତାହାର ପ୍ରସ୍ତୁତକର୍ତ୍ତା ଶ୍ରୀ ସୁବ୍ରତ ପୃଷ୍ଟି ଓ ଡକ୍ଟର ଦେବୀ ପ୍ରସନ୍ନ ପଟ୍ଟନାୟକ ଚାହିଁଲେ। ତାହା 'ଓଡ଼ିଆ ଅଧ୍ୟୟନ ଓ ଗବେଷଣା ସଂସ୍ଥା' ପକ୍ଷରୁ ପ୍ରସ୍ତୁତ ହୋଇଥିବା ଦର୍ଶାଗଲା ଏବଂ କମିଟି ତାହାକୁ ଗ୍ରହଣ କରିବାକୁ ନିଷ୍ପତ୍ତି କଲେ। ଏଥିପାଇଁ ୨୦୧୩ ଫେବୃଆରୀ ୧୬ ତାରିଖର ବୈଠକରେ ସଂସ୍ଥାର ଅଧ୍ୟକ୍ଷ ଡକ୍ଟର ପଟ୍ଟନାୟକ ଓ ସଦସ୍ୟ– ସଚିବ ଶ୍ରୀ ପୃଷ୍ଟିଙ୍କ ପାଇଁ ଏକ ଧନ୍ୟବାଦ ପ୍ରସ୍ତାବ ମଧ୍ୟ ଗୃହୀତ ହେଲା।

ଏହାର ପ୍ରାୟ ମାସକ ପରେ ୨୦ ମାର୍ଚ୍ଚ ୨୦୧୩ରେ ଅନୁଷ୍ଠିତ ବୈଠକରେ ସେହି ରିପୋର୍ଟକୁ ପାଠ କରାଗଲା ଏବଂ ତାହାକୁ ପରିମାର୍ଜିତ ଓ ପରିବର୍ଦ୍ଧିତ କରି ଏବଂ ସେଥିରେ ଆବଶ୍ୟକୀୟ ନଥିପତ୍ର ସଂଯୋଜିତ କରି ଏକ ଚୂଡ଼ାନ୍ତ ରିପୋର୍ଟ

ପ୍ରସ୍ତୁତ କରାଯିବା ପାଇଁ ନିଷ୍ପତ୍ତି ନିଆଗଲା । ସେହି ଭିତ୍ତିପତ୍ର ପାଇଁ ଡକ୍ଟର ପଟ୍ଟନାୟକ ଓ ଶ୍ରୀ ପୃଷ୍ଟିଙ୍କୁ ୧୫ ହଜାର ଟଙ୍କା କରି ୩୦ ହଜାର ଟଙ୍କା ଦିଆଯିବା ପାଇଁ ମଧ୍ୟ ପ୍ରସ୍ତାବ ଗୃହୀତ ହେଲା ।

ଏଠାରେ ପ୍ରଶ୍ନ ଉଠେ, ଯେଉଁ ଭିତ୍ତି ପ୍ରବନ୍ଧ ପାଇଁ ଓଡ଼ିଆ ଭାଷା ପ୍ରତିଷ୍ଠାନ ଉଭୟ ପ୍ରାବନ୍ଧିକଙ୍କୁ ୧୫ ହଜାର ଟଙ୍କା ଲେଖାଏଁ ଦେଲେ ବା ଦେବାପାଇଁ ପ୍ରତିଶ୍ରୁତି ଦେଲେ, ସେ ପ୍ରବନ୍ଧଟିର ସ୍ୱତ୍ୱ କାହାର ? ପୁଣି ପାରିତୋଷିକ ଯେତେ ସ୍ୱଳ୍ପ ଓ ନଗଣ୍ୟ ହେଲେ ମଧ୍ୟ ତାହା ଗ୍ରହଣ କରି କମିଟିର ସଦସ୍ୟମାନେ ଓଡ଼ିଆ ଭାଷା ପ୍ରତିଷ୍ଠାନ ପକ୍ଷରୁ ଯେଉଁ ପରିମାର୍ଜିତ ଓ ପରିବର୍ଦ୍ଧିତ ପୂର୍ଣ୍ଣାଙ୍ଗ ରିପୋର୍ଟ ପ୍ରସ୍ତୁତ କଲେ– ସେ ରିପୋର୍ଟର ସ୍ୱତ୍ୱ ବି କାହାର ? ଏ ଉଭୟର ସ୍ୱତ୍ୱ ଓଡ଼ିଆ ଭାଷା ପ୍ରତିଷ୍ଠାନର ବା ସଂସ୍କୃତି ବିଭାଗ ପକ୍ଷରୁ ଏହା ପ୍ରସ୍ତୁତ ହୋଇଥିବାରୁ ରାଜ୍ୟ ସଂସ୍କୃତି ବିଭାଗର ବୋଲି ନିଶ୍ଚିତ ଭାବରେ କହିହେବ । ରାଜ୍ୟ ସରକାରଙ୍କ ରିପୋର୍ଟରେ ଏ ସଂପର୍କରେ ଉଲ୍ଲେଖ ମଧ୍ୟ ଅଛି । ରିପୋର୍ଟର ମୁଖ୍ୟ ଇନ୍‌ର ପୃଷ୍ଠାର ପଛ ପାଖରେ, ଏକ ସ୍ୱତନ୍ତ୍ର ପୃଷ୍ଠାରେ "This document is exclusively prepared for the Department of Culture, Government of Odisha and can not be re-produced, fully or partly, in any form" ବୋଲି ସୂଚିତ ହୋଇଛି । ମାତ୍ର ଆଶ୍ଚର୍ଯ୍ୟର ବିଷୟ ଯେ ଓଡ଼ିଆ ଭାଷାର ଶାସ୍ତ୍ରୀୟ ମାନ୍ୟତା ପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀରେ ୮ ଜୁନ୍ ୨୦୧୩ରେ ଏବଂ କେନ୍ଦ୍ର ସଂସ୍କୃତି ମନ୍ତ୍ରୀଙ୍କ ନିକଟରେ ୧୦ ଜୁନ୍ ୨୦୧୩ରେ ଯେଉଁ ରିପୋର୍ଟ ସାଂସଦ ଶ୍ରୀ ଖୁଣ୍ଟିଆଙ୍କ ପକ୍ଷରୁ ଦାଖଲ କରାଯାଇଛି– ତାହା ଅଦ୍ଭୁତ ଭାବରେ ଓଡ଼ିଶା ସରକାରଙ୍କ ଚୂଡ଼ାନ୍ତ ରିପୋର୍ଟ ସହିତ ମେଳ ଖାଉଛି । ପୁଣି 'କ୍ଲାସିକାଲ ଓଡ଼ିଆ' ନାମରେ 'କିସ୍ ଫାଉଣ୍ଡେସନ୍' ପକ୍ଷରୁ ଯେଉଁ ପୁସ୍ତକଟି ମୁଦ୍ରିତ ହୋଇ ଏବେ ୧୫୦୦ ଟଙ୍କା ମୂଲ୍ୟରେ ବିକ୍ରୟ କରାଯାଉଛି, ତାହାର ମୂଳପାଠ ମଧ୍ୟ ସରକାରଙ୍କର ସେହି ରିପୋର୍ଟ ସହ ପ୍ରାୟ ସମାନ । ଶ୍ରୀ ସୁବ୍ରତ ପୃଷ୍ଟି ଓ ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକ ଉଭୟ ସରକାରୀ ଓ ବେସରକାରୀ କମିଟିରେ ସମାନ ଭୂମିକାରେ ଥିବା ଯୋଗୁଁ ଯେ ଏହା ସମ୍ଭବ ହୋଇଛି ଏହା ନିଃସନ୍ଦେହ । ମାତ୍ର ଶ୍ରୀ ପୃଷ୍ଟି ଓ ଡକ୍ଟର ପଟ୍ଟନାୟକଙ୍କ ମୂଳ ଭିତ୍ତି–ପ୍ରବନ୍ଧଠାରୁ ଏହି ଚୂଡ଼ାନ୍ତ ରିପୋର୍ଟର ପାଠ ଅନେକ ଭିନ୍ନ । ଅର୍ଥାତ୍ ରାଜ୍ୟ ସରକାରଙ୍କ କମିଟି ଦ୍ୱାରା ପ୍ରସ୍ତୁତ ପାଠ ହିଁ ଉଭୟ ରିପୋର୍ଟରେ ସ୍ଥାନିତ ହୋଇଛି । ଅଥଚ ସାଂସଦ ଶ୍ରୀ ଖୁଣ୍ଟିଆ ସାମ୍ବାଦିକ ସମ୍ମିଳନୀରେ ଅଭିଯୋଗ କରି କହିଛନ୍ତି ଯେ ଓଡ଼ିଆ ଭାଷାର ଶାସ୍ତ୍ରୀୟ ମାନ୍ୟତା ପ୍ରସଙ୍ଗରେ ରାଜ୍ୟ ସରକାର କିଛି ନକରି ତୁଚ୍ଛାକୁ ନିଜ ଢୋଲ ପିଟୁଛନ୍ତି !

॥ ୯ ॥

ଏ ବିବାଦ ପ୍ରସଙ୍ଗରେ ପ୍ରକୃତ ତଥ୍ୟ କ'ଣ ତାହା ଜାଣିବା ପାଇଁ ଏହି ଲେଖକ ସୂଚନା ଅଧିକାର ବଳରେ କେତେକ ପ୍ରଶ୍ନ ନେଇ ପହଞ୍ଚିଥିଲା କେନ୍ଦ୍ର ସଂସ୍କୃତି ମନ୍ତ୍ରାଳୟ ଓ ତାହାର 'ନୋଡ଼ାଲ ଏଜେନ୍‌ସି' ରୂପେ କାମ କରୁଥିବା କେନ୍ଦ୍ର ସାହିତ୍ୟ ଏକାଡେମୀ ପାଖରେ । ଗୋଟିଏ ପ୍ରଶ୍ନ ଥିଲା, ''ଗଣମାଧ୍ୟମରେ ପ୍ରକାଶ ପାଇଛି ଯେ ଓଡ଼ିଶା ସରକାରଙ୍କ ରିପୋର୍ଟ ୨୩ ଜୁଲାଇ ବୈଠକର ମାତ୍ର ୧୫ ମିନିଟ୍ ପୂର୍ବରୁ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପାଖରେ ପହଞ୍ଚିଲା, ଏହା କ'ଣ ସତ ?'' ଏହାର ଉତ୍ତରରେ ସାହିତ୍ୟ ଏକାଡେମୀର ଲୋକସୂଚନା ଅଧିକାରୀ କହିଛନ୍ତି, ''ଗଣମାଧ୍ୟମର ଏହି ବିବରଣୀ ସତ୍ୟ ନୁହେଁ । ଓଡ଼ିଶା ସରକାରଙ୍କ ରିପୋର୍ଟ ଯଥା ସମୟରେ ପହଞ୍ଚିଥିଲା ।''

ଆଉ ଏକ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ ଥିଲା, ''କେଉଁ ରିପୋର୍ଟ ଭିତ୍ତିରେ ଓଡ଼ିଆ ଭାଷାକୁ ଶାସ୍ତ୍ରୀୟ ମାନ୍ୟତା ପ୍ରଦାନ ସଂପର୍କରେ ପ୍ରଥମ ବୈଠକ ଅନୁଷ୍ଠିତ ହୋଇଥିଲା ?'' ଏହାର ଉତ୍ତରରେ ସାହିତ୍ୟ ଏକାଡ଼େମୀର ଜନ ସୂଚନା ଅଧିକାରୀ କହିଛନ୍ତି, ''ଓଡ଼ିଆ ଭାଷାକୁ ଶାସ୍ତ୍ରୀୟ ମାନ୍ୟତା ଦେବାପାଇଁ ଚୂଡ଼ାନ୍ତ ବୈଠକ ୨୦୧୩ ମସିହା ଜୁଲାଇ ୨୩ ତାରିଖ ଦିନ ଅନୁଷ୍ଠିତ ହୋଇଥିଲା ଏବଂ ସେଥିରେ ଦୁଇଟିଯାକ ରିପୋର୍ଟକୁ ବିଚାରକୁ ନିଆଯାଇଥିଲା ''

॥ ୧୦ ॥

ଯଦି ସୂଚନା ଅଧିକାର ବଳରେ ମିଳିଥିବା କେନ୍ଦ୍ର ସରକାରଙ୍କର ଏହି ଉତ୍ତର ଠିକ୍ ତେବେ ଓଡ଼ିଆ ଭାଷାକୁ ଶାସ୍ତ୍ରୀୟ ମାନ୍ୟତା ଦେବାପାଇଁ ଭାଷା ବିଶେଷଜ୍ଞ କମିଟିର ସୁପାରିଶ ପରେ ପରେ ସାଂସଦ ଶ୍ରୀ ଖୁଣ୍ଟିଆ କାହିଁକି କହିଲେ ଯେ ଓଡ଼ିଆ ଭାଷାର ଶାସ୍ତ୍ରୀୟ ମାନ୍ୟତା ପାଇଁ ରାଜ୍ୟ ସରକାର କିଛି କରିନାହାନ୍ତି ? ଏ ସମ୍ପର୍କରେ ଦୈନିକ 'ସମ୍ବାଦ'ର ଜାନୁଆରୀ ୧୪ରୁ ୧୬ ତାରିଖ ମଧ୍ୟରେ ଏହି ଲେଖକର ତିନି କିସ୍ତିର ଗୋଟିଏ ଲେଖା ପ୍ରକାଶ ପାଇବା ପରେ ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକ ଜାନୁଆରୀ ୨୧ ତାରିଖ ଦିନ 'ସମ୍ବାଦ'ରେ ନିଜର ପ୍ରତିକ୍ରିୟାରେ କହିଛନ୍ତି, ''ଆମ ସରକାରୀ ରିପୋର୍ଟ ବିଷୟରେ ତାରିଖ ନେଇ ଯେତେ ବିତର୍କ କଲେ ମଧ୍ୟ ଏହି ରିପୋର୍ଟ କେନ୍ଦ୍ରୀୟ କମିଟି ସଭ୍ୟମାନଙ୍କ ଆଗରେ ଜୁଲାଇ ୨୩ ତାରିଖ, ଦିନ ୧୧ଟା ବେଳେ ପହଞ୍ଚିଲା– ଏହା କେହି ଅସ୍ୱୀକାର କରିପାରିବେ ନାହିଁ ।''

ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକଙ୍କ ଏହି ଉକ୍ତିରେ ସତ୍ୟତା ଅଛି ଅବଶ୍ୟ, କିନ୍ତୁ ଏହି ସତ୍ୟ ପଛର ଅସଲ ସତ୍ୟଟି କ'ଣ ?

ଅସଲ ସତ୍ୟଟି ଅତ୍ୟନ୍ତ ସାଂଘାତିକ । ଓଡ଼ିଆ ଭାଷାକୁ ଶାସ୍ତ୍ରୀୟ ମାନ୍ୟତା ପ୍ରସଙ୍ଗର ଟିକିନିଖି ଖବର ରଖୁଥିବା ଏବଂ ନିଜ କୃତିତ୍ୱର ଟିକିନିଖି ବିବରଣୀ ଗଣମାଧ୍ୟମକୁ ଦେଇ ସମସ୍ତ ଶ୍ରେୟ ନିଜ ପକ୍ଷରୁ ନେଉଥିବା ଶ୍ରୀ ରାମଚନ୍ଦ୍ର ଖୁଣ୍ଟିଆ ବା ସଂପୃକ୍ତ ବ୍ୟକ୍ତିମାନେ ଏ ସତ୍ୟଟିକୁ ଏଯାଏଁ ଗୋପନ ରଖିଛନ୍ତି ରାଜ୍ୟବାସୀଙ୍କଠାରୁ ।

ସେହି ସାଙ୍ଘାତିକ ତଥା ଅସଲ ସତ୍ୟଟି ହେଉଛି, ଓଡ଼ିଆ ଭାଷାକୁ ଶାସ୍ତ୍ରୀୟ ମାନ୍ୟତା ପ୍ରଦାନ ପାଇଁ ଓଡ଼ିଆ ଭାଷା ପ୍ରତିଷ୍ଠାନ ଦ୍ୱାରା ସଂସ୍କୃତି ବିଭାଗ ପକ୍ଷରୁ ଯେଉଁ ସ୍ୱତନ୍ତ୍ର ପୁସ୍ତକ (ସବ୍‌ମିସନ୍) ପ୍ରସ୍ତୁତ ହୋଇଥିଲା, ତାହାକୁ ଜୁନ୍ ୨୪ ତାରିଖ ଦିନ ଏକ ସ୍ୱତନ୍ତ୍ର ଚିଠି ଲେଖି ସଂସ୍କୃତି ମନ୍ତ୍ରାଳୟକୁ ପଠାଇ ଦେଇଥିଲେ ରାଜ୍ୟର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ । ତାହାର ପତ୍ର ସଂଖ୍ୟା ଥିଲା UM-41/2013-85 ଓ ବିଷୟ ଥିଲା, ‘‘Declaring Odia as a Classical Language’’ । ସେଥିରେ ମୁଖ୍ୟମନ୍ତ୍ରୀ କେନ୍ଦ୍ର ସଂସ୍କୃତି ମନ୍ତ୍ରୀ ଶ୍ରୀମତୀ ଚନ୍ଦ୍ରିକା କୁମାରୀ କାଟୋଚ୍‌ଙ୍କୁ ଲେଖିଥିଲେ, ‘‘I am to present you a Report on the Classical Status of Odia Language prepared by an Expert Committee specially constituted for the purpose. This report contains all the Annexures and Appendices in support of Odia as a Classical Language. While Odisha, a land of rich cultural heritage, is an accient Land, the Odia Language is also quite old. The earliest reference to Odia Language is found in 'Natya Shastra' of Bharat Muni (4th Century B.C.) It has an unbroken literary tradition and has texts of high antiquity.

I trust that this report will receive due consideration of the Linguistic Expert Committee and Odia be declared as a Classical Language by the Government of India soon."

ସୂଚନା ଅଧିକାର ଆବେଦନ ଅନୁସାରେ ମୁଖ୍ୟମନ୍ତ୍ରୀଙ୍କ ଏହି ଚିଠିର ଯେଉଁ ନକଲ ଏହି ଲେଖକଙ୍କୁ ମିଳିଛି, ସେଥିରେ ମାନ୍ୟବର ସଂସ୍କୃତି ମନ୍ତ୍ରୀଙ୍କ କାର୍ଯ୍ୟାଳୟରେ ତାହା ୨୬ ଜୁନ୍ ୨୦୧୩ରେ ପହଞ୍ଚି ଥିଲା ବୋଲି ଜଣାପଡିଛି । ସଂସ୍କୃତି ମନ୍ତ୍ରାଳୟର ଅନ୍ୟ ଜଣେ ବରିଷ୍ଠ ଅଧିକାରୀ (ସମ୍ଭବତଃ ଯୁଗ୍ମ ସଚିବ) ସେଥିରେ ୩ ଜୁଲାଇ ୨୦୧୩ରେ ସ୍ୱାକ୍ଷର ମଧ୍ୟ କରିଛନ୍ତି ।

ଏ ପ୍ରସଙ୍ଗରେ ଏକ ଗୁରୁତ୍ୱପୂର୍ଣ୍ଣ ବିଷୟ ହେଉଛି, କେନ୍ଦ୍ର ସରକାରଙ୍କ ସଂସ୍କୃତି ମନ୍ତ୍ରାଳୟର ‘ନୋଡାଲ୍ ଏଜେନ୍‌ସି’ ଭାବେ କାର୍ଯ୍ୟ କରୁଥିବା ସାହିତ୍ୟ ଏକାଡ଼େମୀ, ଓଡ଼ିଆ ଭାଷାର ଶାସ୍ତ୍ରୀୟ ମାନ୍ୟତା ପାଇଁ ଭାଷା ବିଶେଷଜ୍ଞ କମିଟି ଗଠନ କଲେ ୩ ଜୁଲାଇ ୨୦୧୩ରେ । ତାହାର ଆଠଦିନ ପୂର୍ବରୁ ଅର୍ଥାତ୍ ଜୁନ୍ ୨୬ ତାରିଖରେ କେନ୍ଦ୍ର ସଂସ୍କୃତି ମନ୍ତ୍ରୀଙ୍କ ଦପ୍ତରରେ ମୁଖ୍ୟମନ୍ତ୍ରୀଙ୍କ ଚିଠି ଓ ସରକାରଙ୍କ ପୂର୍ଣ୍ଣାଙ୍ଗ ରିପୋର୍ଟ ପହଞ୍ଚି ସାରିଥିଲା । ସଂସ୍କୃତି ମନ୍ତ୍ରାଳୟର ଜଣେ ବରିଷ୍ଠ ଅଧିକାରୀ ମଧ୍ୟ ଜୁଲାଇ ୩ ତାରିଖ ଦିନ ଚିଠିଟିକୁ ପାଇଥିଲେ । ଅଥଚ ତାହାର ୨୦ ଦିନ ପରେ, ଜୁନ୍ ୨୩ ତାରିଖରେ ଅନୁଷ୍ଠିତ ବୈଠକର ଠିକ୍ ପୂର୍ବରୁ ରିପୋର୍ଟଟି କାହିଁକି ଭାଷା ବିଶେଷଜ୍ଞମାନଙ୍କ ଟେବୁଲ୍‌ରେ ପହଞ୍ଚିଲା ?

॥ ୧୧ ॥

ସୂଚନା ଅଧିକାର ବଳରେ ମିଳିଥିବା ତଥ୍ୟ ଓ ପତ୍ରନକଲ ଅନୁସାରେ, ସଂସ୍କୃତି ମନ୍ତ୍ରାଳୟର ଅଣ୍ଡର ସେକ୍ରେଟାରୀ ଶ୍ରୀ ଦୀପଙ୍କର ଦତ୍ତ ଏକ ସ୍ୱତନ୍ତ୍ର ଚିଠି ଲେଖି ମୁଖ୍ୟମନ୍ତ୍ରୀଙ୍କ ୨୪ ଜୁନ୍ ଚିଠିର ନକଲ ସହିତ ରିପୋର୍ଟର ୭ଟି କପି କେନ୍ଦ୍ର ସାହିତ୍ୟ ଏକାଡ଼େମୀର ସଚିବଙ୍କ ନିକଟକୁ ପଠାଇଲେ ୨୨ ଜୁଲାଇ ୨୦୧୩ ତାରିଖରେ । ତାହା ସେ ପଠାଇଥିଲେ ଓଡ଼ିଆ ଭାଷା ପ୍ରତିଷ୍ଠାନର ନିର୍ଦ୍ଦେଶକ ଡକ୍ଟର ପ୍ରସନ୍ନ କୁମାର ମହାନ୍ତି ଓ ଓଡ଼ିଶା ସାହିତ୍ୟ ଏକାଡେମୀର ସଚିବ ଶ୍ରୀ ବିଜୟ କୁମାର ନାୟକ ଦିଲ୍ଲୀ ଯାଇ କେନ୍ଦ୍ର ସରକାରଙ୍କ ସଂସ୍କୃତି ମନ୍ତ୍ରାଳୟରେ ଧାରଣା ଦେବା ପରେ । ସେଯାଏଁ, ଦୀର୍ଘ ୨୭ଦିନ ଧରି ମୁଖ୍ୟମନ୍ତ୍ରୀଙ୍କ ଚିଠି ଓ ରାଜ୍ୟ ସରକାରଙ୍କ ରିପୋର୍ଟକୁ ଚାପି ରଖାଯାଇଥିଲା କେନ୍ଦ୍ର ସଂସ୍କୃତି ମନ୍ତ୍ରୀଙ୍କ ଦପ୍ତରରେ ଏବଂ ସାଂସଦ ଶ୍ରୀ ରାମଚନ୍ଦ୍ର ଖୁଣ୍ଟିଆ ଦାଖଲ କରିଥିବା ରିପୋର୍ଟ ଆଧାରରେ ଭାଷା ବିଶେଷଜ୍ଞ କମିଟିର ସୁପାରିଶଟି ପାରିତ କରାଇ ନେବାକୁ ଯୋଜନା ହୋଇଥିଲା । ଶେଷ ମୁହୂର୍ତ୍ତରେ ଡକ୍ଟର ମହାନ୍ତି ଓ ଶ୍ରୀ ନାୟକ ଯାଇ ଧାରଣା ଦେବା ପରେ, ଚାପଗ୍ରସ୍ତ ଅବସ୍ଥାରେ ଓ ଅନିଚ୍ଛା ସତ୍ତ୍ୱେ ଶ୍ରୀ ଦୀପଙ୍କର ଦତ୍ତ ସେହି ଚିଠି ଓ ରିପୋର୍ଟ ସାହିତ୍ୟ ଏକାଡ଼େମୀ ସଚିବଙ୍କ ନିକଟକୁ ପଠାଇବାକୁ ବାଧ୍ୟ ହୋଇଥିଲେ । ଏତେ ଅନ୍ୟମନସ୍କ ଓ ଚାପଗ୍ରସ୍ତ ଭାବେ ସେ ସେହି ଚିଠିଟି ପ୍ରସ୍ତୁତ କରିଥିଲେ ଯେ ତାରିଖ ସ୍ଥାନରେ ୨୨ ଜୁଲାଇ ୨୦୧୩ ପରିବର୍ତ୍ତେ ୨୨ ଜୁଲାଇ ୨୦୧୨ ଲେଖି ପକାଇଥିଲେ ।

ଏ ସଂପର୍କରେ ଅନ୍ୟ ଗୁରୁତ୍ୱପୂର୍ଣ୍ଣ ବିଷୟ ହେଉଛି, ମେ ମାସ ୩୧ ତାରିଖ ସୁଦ୍ଧା ରାଜ୍ୟ ସରକାରଙ୍କ ରିପୋର୍ଟର ପ୍ରସ୍ତୁତି

ଶେଷ ହୋଇ ୨ ଜୁନ୍‌ରେ ରାଜ୍ୟ ସଂସ୍କୃତି ମନ୍ତ୍ରୀଙ୍କୁ ପ୍ରଦାନ କରାଯାଇଥିଲା ଏବଂ ସେହି ଉଭୟ ବୈଠକରେ କମିଟିର ସମସ୍ତ ସଦସ୍ୟ ଉପସ୍ଥିତ ଥିଲେ । ମାତ୍ର ତା' ପରିଦିନ (ଜୁନ୍ ତିନି ତାରିଖ ଦିନ) ସାଂସଦ ଶ୍ରୀ ଖୁଣ୍ଟିଆଙ୍କ ସହିତ କମିଟିର ସଦସ୍ୟ ଶ୍ରୀ ସୁବ୍ରତ ପୃଷ୍ଟି ସାହିତ୍ୟ ଏକାଡ଼େମୀ କାର୍ଯ୍ୟାଳୟରେ ସଚିବ ଶ୍ରୀ କେ. ଶ୍ରୀନିବାସ ରାଓଙ୍କୁ ସାକ୍ଷାତ୍ କରି ଶୀଘ୍ର ଭାଷା ବିଶେଷଜ୍ଞ କମିଟି ବୈଠକ ଡାକିବା ପାଇଁ ଅନୁରୋଧ ଜଣାଇଥିଲେ ମଧ୍ୟ ସମ୍ଭବତଃ ସେ କଥା ସଚିବଙ୍କୁ ଜଣାଇ ନଥିଲେ । କାରଣ, ତାହାର ମାସକ ପରେ ସଚିବ ଭାଷା ବିଶେଷଜ୍ଞ କମିଟି ବୈଠକ ପାଇଁ ସଦସ୍ୟମାନଙ୍କୁ ଚିଠି (ନମ୍ବର SA. LEC/3823) ଲେଖି ତା' ସହ ଶ୍ରୀ ରାମଚନ୍ଦ୍ର ଖୁଣ୍ଟିଆଙ୍କ ରିପୋର୍ଟ ପଠାଇଥିଲେ ମଧ୍ୟ ସରକାରଙ୍କ ରିପୋର୍ଟ ସଂପର୍କରେ ସେଥିରେ ସୂଚନା ମଧ୍ୟ ଦେଇ ନଥିଲେ ।

ତା'ହେଲେ ସରକାରଙ୍କ କମିଟିର ସଦସ୍ୟ ଥିବା ଶ୍ରୀ ପୃଷ୍ଟି ସାଂସଦ ଶ୍ରୀ ଖୁଣ୍ଟିଆଙ୍କ ସହ ମିଶି କେଉଁ ରିପୋର୍ଟ ଭିତ୍ତିରେ ଭାଷା ବିଶେଷଜ୍ଞ କମିଟିର ବୈଠକ ଶୀଘ୍ର କରାଇ ନେବାକୁ ସାହିତ୍ୟ ଏକାଡ଼େମୀ ସଚିବଙ୍କ ସହିତ ସେଦିନ ଆଲୋଚନା କରିଥିଲେ ? ନିଶ୍ଚିତ ଭାବରେ ରାଜ୍ୟ ସରକାରଙ୍କ ରିପୋର୍ଟ ଭିତ୍ତିରେ ନୁହେଁ । କିନ୍ତୁ ଓଡ଼ିଆ ଭାଷା ପ୍ରତିଷ୍ଠାନ ନିର୍ଦ୍ଦେଶକ ଓ ଓଡ଼ିଶା ସାହିତ୍ୟ ଏକାଡେମୀ ସଚିବଙ୍କ ଶେଷ ମୁହୂର୍ତ୍ତର ତତ୍ପରତା ସେମାନଙ୍କର ସେହି ଯୋଜନାକୁ ପଣ୍ଡ କରିଦେଇଥିଲା ।

॥ ୧୨ ॥

ଏବେ ଓଡ଼ିଆ ଭାଷାକୁ ଶାସ୍ତ୍ରୀୟ ମାନ୍ୟତା ପ୍ରଦାନ ପାଇଁ କେନ୍ଦ୍ର କ୍ୟାବିନେଟ୍‌ର ନିଷ୍ପତ୍ତି ପରେ ତାହାର ଶ୍ରେୟ ସହିତ ସୁଫଳ ନେବାପାଇଁ ପ୍ରତିଯୋଗିତା ଚାଲିଛି । ଠିକ୍‌ରେ ହେଉ ବା ଭୁଲ୍‌ରେ– ସବୁଯାକ ବା ସବୁଠୁ ବେଶୀ ଶ୍ରେୟ ଯାହାଙ୍କୁ ଦିଆଯାଇଛି, ସେହି ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକ ଗୋଟିଏ ସମ୍ବାଦପତ୍ରରେ ସାକ୍ଷାତକାର ଦେଇ କହିଛନ୍ତି, ''ଶ୍ରେୟ ନେବାପାଇଁ ଏଠି ବାଡିଆପିଟା ଚାଲିଛି, ଏଣୁ ଆଗକୁ କ'ଣ ହେବ କହି ହେଉନି ।'' ପୁଣି ଓଡ଼ିଆ ଭାଷାକୁ ଶାସ୍ତ୍ରୀୟ ମାନ୍ୟତା ଦେବା ପାଇଁ ଭାଷା ବିଶେଷଜ୍ଞ କମିଟି ସୁପାରିଶ କରିବାର ଦିନକ ପରେ ''ରାଜ୍ୟ ସରକାର କିଛି ନକରି ତୁଚ୍ଛାଟାରେ ଢ଼ୋଲ ପିଟୁଛନ୍ତି'' ବୋଲି ସାମ୍ବାଦିକ ସମ୍ମିଳନୀରେ ଅଭିଯୋଗ କରି ରାଜନୀତିର ଅୟମାରମ୍ଭ କରିଥିବା ଶ୍ରୀ ରାମଚନ୍ଦ୍ର ଖୁଣ୍ଟିଆଙ୍କ ସହିତ ପ୍ରାୟ ସବୁ ସଭାରେ ଦେଖାଯାଉଥିବା ଦେବୀବାବୁ ସେହି ସାକ୍ଷାତ୍‌କାରରେ ଆହୁରି ମଧ୍ୟ କହିଛନ୍ତି, ''ମୋ ମତରେ ରାଜନେତାମାନେ ରାଜନୈତିକ କ୍ଷେତ୍ରରେ ରାଜନୀତି କରନ୍ତୁ, କିନ୍ତୁ ଭାଷାକୁ ନେଇ ନୁହେଁ ।''

ଏବେ ରାଜ୍ୟବାସୀ ବିଚାର କରନ୍ତୁ, ଭାଷାକୁ ନେଇ ରାଜନୀତି କରୁଛନ୍ତି କେଉଁମାନେ ?

ଗତ ଫେବୃଆରୀ ୨୦ ତାରିଖ ଦିନ ଓଡ଼ିଆ ଭାଷା ଶାସ୍ତ୍ରୀୟ ମାନ୍ୟତା ପାଇବା ବିଷୟ କେନ୍ଦ୍ର ସରକାରଙ୍କ ଦ୍ୱାରା ଘୋଷିତ ହୋଇଛି ଏବଂ ଏହା ପାଇବାରେ ଓଡ଼ିଆ ହୋଇଛି ପ୍ରଥମ ଭାରତୀୟ ଆର୍ଯ୍ୟଭାଷା । ଏହା ଆମ ଭାଷା ପାଇଁ ଏକ ଅନନ୍ୟ ଗୌରବ । ଏକଦା ଆମ ଭାଷାର ବିଲୋପ ପାଇଁ ପଡ଼ୋଶୀ ବଙ୍ଗୀୟମାନଙ୍କର କୂଟଚକ୍ରାନ୍ତ ସତ୍ତ୍ୱେ –ଆମ ଭାଷା ଆମର ପୂର୍ବସୂରୀମାନଙ୍କର ଏକନିଷ୍ଠ ସଂଗ୍ରାମ ଓ ଉଦ୍ୟମ ବଳରେ ତିଷ୍ଠି ରହିପାରିଥିଲା । ଆଜି ଆମରି ଭାଷାଭାଷୀମାନଙ୍କ ମଧ୍ୟରେ ଆମ ଭାଷା ପାଇଁ ଆନ୍ତରିକତା ଓ ଆବେଗ ଯେତେବେଳେ କମି କମି ଯାଉଛି, ସେତେବେଳେ ଯାହା ସବୁଠୁ ବେଶୀ ଆବଶ୍ୟକ, ତାହା ହେଉଛି ଆମ ଭାଷାର ବ୍ୟାପକ ବ୍ୟବହାର ଓ ବିଶେଷତ୍ୱପୂର୍ଣ୍ଣ ବିକାଶ ପାଇଁ ସାମୂହିକ ଉଦ୍ୟମ । ଅଥଚ ଠିକ୍ ଏତିକିବେଳେ ହିଁ ସଂକୀର୍ଣ୍ଣ ସ୍ୱାର୍ଥ ପାଇଁ ଆମେ ସାମୂହିକ ସଫଳତାକୁ ବ୍ୟକ୍ତିଗତ ସଫଳତା ବୋଲି ପ୍ରଚାରିତ କରି ସେହି ବିକାଶ ପ୍ରକ୍ରିୟାକୁ ବ୍ୟାହତ କରୁଛୁ । ଏହା ଆଦୌ ସ୍ପୃହଣୀୟ ନୁହେଁ । ଆଶା, ସଂପୃକ୍ତମାନେ ଏପରି ମନୋବୃତ୍ତି ପରିହାର କରିବେ ଏବଂ ଅନ୍ୟମାନେ ଏପରି ହୀନ ଉଦ୍ୟମକୁ ପ୍ରତିହତ କରିବେ । ତା'ହେଲେ ଯାଇ ଭାଷାଭିତ୍ତିକ ରାଜ୍ୟ ଭାବରେ ଓଡ଼ିଶାର ଏବଂ ଶାସ୍ତ୍ରୀୟ ମାନ୍ୟତାସମ୍ପନ୍ନ ରାଜ୍ୟଭାଷା ଭାବରେ ଓଡ଼ିଆର ସାମଗ୍ରିକ ବିକାଶ ସମ୍ଭବ ହେବ ।

୪ ଆର୍, ୧/୨, ଇଉନିଟ୍–୩,
ଖାରବେଳ ନଗର, ଭୁବନେଶ୍ୱର–୧



# ଭରତମୁନିଙ୍କ 'ନାଟ୍ୟଶାସ୍ତ୍ର'ର ଉଡ୍ରବିଭାଷା ହିଁ ଓଡ଼ିଆ ଭାଷା

**କୀର୍ତ୍ତନ ନାରାୟଣ ପାଢ଼ୀ**

ବର୍ତ୍ତମାନ ହିନ୍ଦୀ ହେଉଛି ଭାରତର ରାଷ୍ଟ୍ରଭାଷା ଓ ତାମିଲ୍, ତେଲୁଗୁ, କନ୍ନଡ଼, ମାଲାୟାଲାମ୍, ଓଡ଼ିଆ ଇତ୍ୟାଦି ପ୍ରାଦେଶିକ ଭାଷା । ସେହିପରି ପୂର୍ବରୁ ସଂସ୍କୃତ ଥିଲା ଭାରତର ଅଘୋଷିତ ରାଷ୍ଟ୍ରଭାଷା ଓ ବିଭାଷାଗୁଡ଼ିକ ଥିଲା ପ୍ରାଦେଶିକ ଭାଷା । କୌଣସି ବିଭାଷା ଯେଉଁମାନଙ୍କର ମାତୃଭାଷା ଥିଲା, ସେମାନଙ୍କ ମଧ୍ୟରୁ ଅନେକ ବ୍ୟକ୍ତି ସଂସ୍କୃତ ଶିଖିଲେ ଓ କହିଲେ । କିନ୍ତୁ ସେମାନଙ୍କ ନିଜ ନିଜର ମାତୃଭାଷାର ଧ୍ୱନିଗତ ଉଚ୍ଚାରଣ ପ୍ରଭାବରେ ସଂସ୍କୃତ ଭାଷାର ଶବ୍ଦ ଭାରତର ନାନା ଅଞ୍ଚଳରେ ନାନା ପ୍ରକାରରେ ଉଚ୍ଚାରିତ ହେଲା । କେତେକ ସଂସ୍କୃତ ଶବ୍ଦ ଓ ତାହାର ଉଚ୍ଚାରଣ ଅବିକୃତ ରହିଲା ବେଳେ କେତେକ ବିକୃତ ହେଲା, ପୁଣି ନିଜ ନିଜ ମାତୃଭାଷାର ଦେଶଜ ଶବ୍ଦ ମିଶିଲା । ତେଣୁ କେତେକ ବିଭାଷାରେ, ଯଥାକ୍ରମେ, ତତ୍‌ସମ୍, ତଦ୍ଭବ ସ ଦେଶଜ ଶବ୍ଦ ପ୍ରୟୋଗ ହେଲା ଓ ଉଚ୍ଚାରଣର ଭିନ୍ନତା ରହିଲା । ଫଳରେ ଭିନ୍ନ ଭିନ୍ନ ପ୍ରାକୃତ ଭାଷା ସୃଷ୍ଟି ହେଲା । ଏଥିରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ, ଭାରତରେ ପ୍ରାକୃତ ଭାଷାଗୁଡ଼ିକର ଉଦ୍ଭବ ହେବା ପୂର୍ବରୁ ବିଭାଷାର ପ୍ରଚଳନ ଥିଲା । ସଂସ୍କୃତ ଭାଷାର ସଂସ୍କାରଣ ଗୁଣ କୋହଳ ହେବାରୁ କିମ୍ବା ବିଭାଷାର ସଂସ୍କୃତାୟିତ ରୂପ କାରଣରୁ ପ୍ରାକୃତଭାଷା ଗୁଡ଼ିକର ସୃଷ୍ଟି ହେଲା । ତେଣୁ ଏହା ଅମାନ୍ୟ କରିହେବ ନାହିଁ ଯେ, ଆଜିକାଲିର ଲୌକିକ ସଂସ୍କୃତ ଭାଷାଠାରୁ ବୈଦିକ ସଂସ୍କୃତ ପ୍ରାଚୀନତର ଓ ପ୍ରାକୃତ ଭାଷାଗୁଡ଼ିକଠାରୁ ବିଭାଷାଗୁଡ଼ିକ ପ୍ରାଚୀନତର ଅଟେ । ପୁଣି ବିଭାଷାଗୁଡ଼ିକ ସଂସ୍କୃତ ଓ ପ୍ରାକୃତ ସଦୃଶ ଜାତିଭାଷା ଅଟେ ।

ଭରତମୁନିଙ୍କ 'ନାଟ୍ୟଶାସ୍ତ୍ର'ରେ ବର୍ଣ୍ଣିତ ହୋଇଥିବା ଓ ପ୍ରାଚୀନ ନାଟ୍ୟରେ ପ୍ରୟୋଗ ହୋଇ ଆସୁଥିବା ଉଡ୍ରବିଭାଷା ବର୍ତ୍ତମାନ ଓଡ଼ିଆ ଭାବରେ ଖ୍ୟାତ ଅଟେ । 'ନାଟ୍ୟଶାସ୍ତ୍ର'ର ନାମକରଣରୁ ଜଣାଯାଉଛି, ଏହା ନାଟ୍ୟର ଶାସ୍ତ୍ର, ଯେଉଁଥିରେ ଅଭିନୟ, ନୃତ୍ୟ, ଗୀତ, ବାଦ୍ୟ, କାବ୍ୟ, ଅଳଙ୍କାର, ଛନ୍ଦ, ଭାବ, ରସ ଓ ଭାଷାର ଶାସ୍ତ୍ରୀୟ ଲକ୍ଷଣ ବର୍ଣ୍ଣିତ ହୋଇଛି । ବର୍ତ୍ତମାନର ଓଡ଼ିଆ ଭାଷା ବା ତତ୍‌କାଳୀନ ଉଡ୍ରବିଭାଷାର ପ୍ରାଚୀନତା ଜାଣିବା ପାଇଁ 'ନାଟ୍ୟଶାସ୍ତ୍ର'ର ରଚିନା କାଳ ବିଷୟରେ ଅବଗତ ହେବା ବାଞ୍ଛନୀୟ ଅଟେ । ତ୍ରେତା ଯୁଗରେ 'ନାଟ୍ୟଶାସ୍ତ୍ର' ରଚିତ ହୋଇଥିଲା ବୋଲି ସେହି 'ନାଟ୍ୟଶାସ୍ତ୍ର'ରେ ହିଁ ଉଲ୍ଲେଖ ଅଛି ।

ପୂର୍ବଂ କୃତଯୁଗେ ବିପ୍ରା ବୃତ୍ତେ ସ୍ୱାୟମ୍ଭୁବେନ୍ତରେ ।
ତ୍ରେତାଯୁଗେ ସଂପ୍ରବୃତ୍ତେ ମନୋର୍ବୈବସ୍ୱତସ୍ୟ ଚ ।।୧

ଉପରୋକ୍ତ ଶ୍ଳୋକଟିର ବ୍ୟାଖ୍ୟା କରି ଅଭିନବଗୁପ୍ତ ତାଙ୍କ 'ଅଭିନବଭାରତୀ'ରେ ସ୍ପଷ୍ଟ ଭାବରେ ଏହି ମତ ଗ୍ରହଣ କରିଛନ୍ତି ।

ତେନ ସର୍ବେଷୁ ତ୍ରେତାଯୁଗେଷୁ
ନାଟ୍ୟପ୍ରବୃତ୍ତିରିତ୍ୟୁକ୍ତଂ ଭବତି ।୨

ବର୍ତ୍ତମାନ ଉପଲବ୍ଧ ହେଉଥିବା 'ନାଟ୍ୟଶାସ୍ତ୍ର' ତ୍ରେତା ଯୁଗରେ ବା ଦ୍ୱାପର ଯୁଗରେ କି କଳିଯୁଗରେ ଲେଖାଯାଇଥାଉ, ବା ନ ଥାଉ, ଏହିସବୁ ଯୁଗରେ ଉଡ୍ରବିଭାଷା ବା ଓଡ଼ିଆଭାଷା ଥିଲା ବୋଲି କେତେକ ସୂଚନା ମିଳେ ।

ଦ୍ୱାପର ଯୁଗରେ ଶ୍ରୀକୃଷ୍ଣ ତାଙ୍କର ଗୁରୁ ସନ୍ଦିପନୀଙ୍କଠାରୁ ଓଡ଼ିଆଭାଷା ଶିକ୍ଷା କରିଥିଲେ ବୋଲି ସାରଳା ଦାସଙ୍କ 'ଓଡ଼ିଆ ମହାଭାରତ'ରୁ ଜଣାଯାଏ ।

ଓଡ଼ିଆ ତେଲଙ୍ଗୀ ଆଉ ନାଗରୀ ଦକ୍ଷିଣୀ ।
କନାଉଜ ଦ୍ରାବିଡ଼ ଯେ ଆଦିଭାଷା ଘେନି ।।
ଏହିପରି ଲେଖିଲେ ଯେ ଭାଷା ଚଉଷଠି ।
ନବଦିନେ ଲେଖିଲେ ଯେ ତାଳପତ୍ର ଚିଠି ।।୩

ଖ୍ରୀ.ପୂ ଅଷ୍ଟମ ଶତାବ୍ଦୀରେ ଜୈନ ତୀର୍ଥଙ୍କର ପାର୍ଶ୍ୱନାଥ କଳିଙ୍ଗରେ ଅର୍ଦ୍ଧମାଗଧୀ ଭାଷାରେ ଧର୍ମ ପ୍ରଚାର କରିଥିଲେ । ସେତେବେଳକୁ ଅର୍ଦ୍ଧମାଗଧୀର ଦେଶଗତ ଉଡ୍ରବିଭାଷାର ପ୍ରଚଳନ ଥିବାରୁ କଳିଙ୍ଗର ଲୋକମାନେ ଅର୍ଦ୍ଧମାଗଧୀ ବୁଝୁଥିଲେ । ଜୈନମାନଙ୍କ 'ନନ୍ଦୀ ସୂତ୍ର', 'ସମବାୟ ସୂତ୍ର', ଓ 'ପ୍ରଜ୍ଞାପନା ସୂତ୍ର'ରେ ଦାସଉଡ଼ିଆ ଓ ଦାସପୁରିଆ ଲିପିର ଚର୍ଚ୍ଚା ହୋଇଛି । ବୌଦ୍ଧମାନଙ୍କ ଲଳିତ ବିସ୍ତର ଗ୍ରନ୍ଥରୁ ଜଣାଯାଏ, ବୁଦ୍ଧଦେବ ଉଗ୍ରଲିପି (ଉଡ୍ରଲିପି) ସମେତ ୬୪ ପ୍ରକାର ଲିପି ଶିକ୍ଷା କରିଥିଲେ ।୪ ଏହି କଥା କେହି ମାନନ୍ତୁ ବା ନ ମାନନ୍ତୁ, 'ନାଟ୍ୟଶାସ୍ତ୍ର' ରଚନା ହେବାବେଳକୁ ଅର୍ଦ୍ଧମାଗଧୀ ପ୍ରାକୃତ ଓ ଉଡ୍ରବିଭାଷା ସମ୍ପୂର୍ଣ୍ଣ ବିକସିତ ହୋଇସାରିଥିବା କଥା କେହି ଅମାନ୍ୟ କରିବେ ନାହିଁ ।

'ନାଟ୍ୟଶାସ୍ତ୍ର'ର ରଚନାକାଳ ବିଷୟରେ ନାନା ମୁନିଙ୍କର ନାନା ମତ ଥିଲେ ହେଁ, ଏହା ଖ୍ରୀ.ପୂ. ପଞ୍ଚମ ଶତାବ୍ଦୀରେ ବା ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀ ପୂର୍ବରୁ ରଚିତ ହୋଇଥିଲା ବୋଲି ଆପାତତଃ ଗୃହୀତ ହୋଇଛି । କେତେକଙ୍କ ମତ ନିମ୍ନରେ ପ୍ରଦତ୍ତ ହେଲା ।

୧. ମନମୋହନ ଘୋଷ ପ୍ରଥମେ ସ୍ଥିର କରିଥିଲେ ଯେ ଭରତଙ୍କ 'ନାଟ୍ୟଶାସ୍ତ୍ର' ଖ୍ରୀ:ପୂ. ୧୦୦ରୁ ଖ୍ରୀଷ୍ଟୀୟ ୨୦୦ ମଧ୍ୟରେ ରଚିତ । କିନ୍ତୁ ପରେ ଅଧିକ ଗବେଷଣା କରି ପୂର୍ବମତ ବଦଳାଇ କହିଲେ, ଏହା ଖ୍ରୀ.ପୂ.୫୦୦ରେ ରଚିତ ।

୨. ଏ.ବି.କିଥ୍‌ଙ୍କ ମତରେ ଭରତଙ୍କ 'ନାଟ୍ୟଶାସ୍ତ୍ର' କାଳିଦାସ ଓ ଭାସଙ୍କ ପୂର୍ବରୁ ରଚିତ ।

୩. ସୁଶୀଲ କୁମାର ଦେଙ୍କ ମତରେ ଭରତ ହେଲେ ପାଣିନୀଙ୍କ ପୂର୍ବବର୍ତ୍ତୀ ।

୪. ଆଇ. ଶେଖରଙ୍କ ମତରେ ଖ୍ରୀ.ପୂ.୨୦୦ ବେଳକୁ 'ନାଟ୍ୟଶାସ୍ତ୍ର' ଅସ୍ତିତ୍ୱକୁ ଆସି ସାରିଥିଲା ।

୫. ମହାମହୋପାଧ୍ୟାୟ କାଣେଙ୍କ ମତରେ 'ନାଟ୍ୟଶାସ୍ତ୍ର' ଖ୍ରୀ.ଅ. ୫୦୦ ପୂର୍ବରୁ ରଚିତ ।

୬. ଡ଼. ମୁହମ୍ମଦ ଇସ୍‌ରାଇଲ ଖାଁଙ୍କ ମତରେ 'ନାଟ୍ୟଶାସ୍ତ୍ର' ଖ୍ରୀ.ଅ. ୪୦୦ରୁ ଖ୍ରୀ.ପୂ.୨୦୦ ମଧ୍ୟରେ ରଚିତ ।୫

୭. ରାମକୃଷ୍ଣ କବିଙ୍କ ମତରେ 'ନାଟ୍ୟଶାସ୍ତ୍ର'ର ରଚନା କାଳ ଖ୍ରୀ.ପୂ. ୫୦୦ ଅଟେ । ୬

୮. ଡ଼. ପାରସନାଥ ଦ୍ୱିବେଦୀଙ୍କ ମତରେ 'ନାଟ୍ୟଶାସ୍ତ୍ର'ର ରଚନାକାଳ ଖ୍ରୀ.ପୂ. ପଞ୍ଚମ ଶତାବ୍ଦୀ ଓ ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀ ମଧ୍ୟରେ ଅଟେ । ୭

ଉପରୋକ୍ତ ମତଗୁଡ଼ିକ ଅନୁସାରେ ଆଜିକୁ ଅନ୍ୟୁନ ୨୦୦୦ ବର୍ଷ ପୂର୍ବରୁ ଭରତମୁନିଙ୍କ 'ନାଟ୍ୟଶାସ୍ତ୍ର' ରଚିତ ହୋଇ ସାରିଥିଲା ଓ ସେତେବେଳକୁ ଅର୍ଦ୍ଧମାଗଧୀ ପ୍ରାକୃତ ଓ ଉଡ୍ରବିଭାଷାର ଉଦ୍ଭବ ଓ ବିକାଶ ହୋଇ ସାରିଥିଲା । ପୁଣି ଭୁବନେଶ୍ୱରସ୍ଥ ଉଦୟଗିରି ପାହାଡ଼ରେ ଥିବା ଜୈନଧର୍ମୀ କଳିଙ୍ଗ ସମ୍ରାଟ ଖାରବେଳଙ୍କ ହାତୀଗୁମ୍ଫା ଶିଳାଲେଖରେ ଖ୍ରୀ.ପୂ. ପ୍ରଥମ ଶତାବ୍ଦୀରେ ଅର୍ଦ୍ଧମାଗଧୀ ପ୍ରାକୃତ ଭାଷାର ବ୍ୟବହାର ହୋଇଥିବାରୁ ସେତେବେଳେ କଳିଙ୍ଗ (ବର୍ତ୍ତମାନ ଓଡ଼ିଶା) ଲୋକମାନେ ଅର୍ଦ୍ଧମାଗଧୀ ଜାଣିଥିଲେ ବୋଲି ପ୍ରମାଣ ମିଳେ । ତେଣୁ ସେତେବେଳେ ଉଡ୍ରବିଭାଷା କଳିଙ୍ଗର ସର୍ବସାଧାରଣ ଲୋକମାନଙ୍କର ଭାଷା ଥିଲା ବୋଲି ପ୍ରମାଣ ମିଳେ । କାରଣ ଉଡ୍ରବିଭାଷା ହେଲା ଅର୍ଦ୍ଧମାଗଧୀ ଜୈନ-ପ୍ରାକୃତର ଦେଶଭାଷା । ଅର୍ଦ୍ଧମାଗଧୀରେ ସଂସ୍କୃତ ଓ ମାଗଧୀ ଭାଷାର ପ୍ରଭାବ ଥିବାରୁ ତାହା ହେଲା ଏକ ପ୍ରାକୃତ ଭାଷା କିନ୍ତୁ ଉଡ୍ରବିଭାଷାରେ କୌଣସି ଭାଷାର ପ୍ରଭାବ ନ ଥିବା ସତ୍ତ୍ୱେ ବା କୌଣସି ଭାଷାରୁ କିଛି ଉଧାର ନ ଥିବା ସତ୍ତ୍ୱେ ଏକ ସ୍ୱତନ୍ତ୍ର, ମୌଳିକ ଓ ବିଶିଷ୍ଟ ଭାଷା ରୂପେ ତାହାର ଖ୍ୟାତି ଓ ବାପ୍ତି ଥିଲା ।

**ଅତିଭାଷା, ଆର୍ଯ୍ୟଭାଷା ଓ ଜାତି ବା ଶାସ୍ତ୍ରୀୟ ଭାଷା**

'ନାଟ୍ୟଶାସ୍ତ୍ର'ରେ ଭାଷାକୁ ଚାରୋଟି ଭେଦରେ ବିଭକ୍ତ କରାଯାଇଛି, ଯଥା: ଅତିଭାଷା, ଆର୍ଯ୍ୟଭାଷା, ଜାତିଭାଷା ଓ ଯୋନ୍ୟନ୍ତରୀ (ଜାତ୍ୟନ୍ତରୀ) ଭାଷା । କେହି କେହି ଅତିଭାଷାକୁ ବୈଦିକ ସଂସ୍କୃତ, ଆର୍ଯ୍ୟଭାଷାକୁ ଲୌକିକ ସଂସ୍କୃତ ଓ ଜାତିଭାଷାକୁ ପ୍ରାକୃତ ବୋଲି ବୁଝନ୍ତି । କିନ୍ତୁ ଭରତମୁନି ସେପରି କହି ନାହାନ୍ତି, କାରଣ ନାଟକରେ କେଉଁ ପାତ୍ର କେଉଁ ସ୍ଥାନରେ, କେଉଁ କାଳରେ, କେଉଁ ଭାଷାରେ, ସମ୍ୱାଦ ଓ ସଂଳାପ କହିବେ ଏବଂ ଗୀତ ଗାନ କରିବେ, ତାହାକୁ ଧ୍ୟାନରେ ରଖି ସେ ଏପରି ଭେଦ ଦର୍ଶାଇଛନ୍ତି ।

ଅତିଭାଷାର୍ଯ୍ୟଭାଷା ଚ ଜାତିଭାଷା ତଥୈବ ଚ ।
ତଥା ଯୋନ୍ୟନ୍ତରୀ ଚୈବ ଭାଷା ନାଟ୍ୟେ ପ୍ରକୀର୍ତ୍ତିତା ।।୮

**ଅତିଭାଷା ଓ ଆର୍ଯ୍ୟଭାଷା**

ଭରତମୁନିଙ୍କ ମତରେ ନାଟକରେ ଦେବତା ଭୂମିକାରେ ଅଭିନୟ କରୁଥିବା ପାତ୍ରମାନଙ୍କର ସଂଳାପ ଓ ଗୀତର ଭାଷା ହେଉଛି ଅତିଭାଷା ଏବଂ ଭୂପାଳ ବା ରାଜାମାନଙ୍କର ଭାଷା ହେଉଛି

ଆର୍ଯ୍ୟଭାଷା । ଏଠାରେ ଆର୍ଯ୍ୟଭାଷାକୁ କେବଳ ସଂସ୍କୃତ ବୋଲି ମାନିନେବା ଠିକ୍ ନୁହେଁ । କାରଣ ଭରତମୁନି ସଂସ୍କୃତ ଭାଷାକୁ ଜାତିଭାଷା ମଧ୍ୟରେ ସ୍ଥାନିତ କରିଛନ୍ତି । ପ୍ରାକୃତକୁ ମଧ୍ୟ ଜାତିଭାଷା ମଧ୍ୟରେ ସ୍ଥାନିତ କରିଛନ୍ତି । ରାଜାମାନେ ଯେଉଁ ଗୋଷ୍ଠୀର ହୁଅନ୍ତୁ ନା କାହିଁକି ସେମାନଙ୍କୁ ଆର୍ଯ୍ୟ ବୋଲି ସମ୍ବୋଧନ କରାଯାଏ । ରାଜାମାନଙ୍କର ରାଣୀମାନେ ସେମାନଙ୍କୁ ଆର୍ଯ୍ୟପୁତ୍ର ବୋଲି ସମ୍ବୋଧନ କରନ୍ତି । ତେଣୁ ରାଜାମାନଙ୍କ ଭାଷା ହେଲା ଆର୍ଯ୍ୟଭାଷା । ସେମାନଙ୍କ ଭାଷାରେ ସଂସ୍କାରରୂପ ଓ ବିଶେଷ ଗୁଣ ଥାଏ ।

ଅତିଭାଷା ତୁ ଦେବନାମାର୍ଯ୍ୟଭାଷା ତୁ ଭୂଭୁଜାମ୍ ।
ସଂସ୍କାରଗୁଣସ ସଂଯୁକ୍ତା ସପ୍ତଦ୍ୱୀପପ୍ରତିଷ୍ଠିତା ।।୯

**ଜାତ୍ୟନ୍ତରୀ ଭାଷା**

ନାଟକ ପ୍ରଦର୍ଶନ ବେଳେ ଶୁଆ-ଶାରୀ କିମ୍ବା ଜୀବଜନ୍ତୁମାନେ ଭାବ ବିନିମୟ କରୁଥିବା ଭାଷାର ସଂଳାପ ଥାଏ, ଯାହାକୁ ଦର୍ଶକମାନଙ୍କୁ ଅଭିନୟବେଳେ ଶୁଣାଇ ଦିଆଯାଏ । କିନ୍ତୁ ମଣିଷମାନେ ସେମାନଙ୍କ ଦୈନନ୍ଦିନ ଜୀବନରେ ଏହି ଭାଷାର ପ୍ରୟୋଗ କରନ୍ତି ନାହିଁ । ଗ୍ରାମ ଓ ଅରଣ୍ୟରେ ରହୁଥିବା ପଶୁପକ୍ଷୀମାନଙ୍କର ଭାଷାକୁ ନାଟ୍ୟଧର୍ମୀ କରିବା ଉଦ୍ଦେଶ୍ୟରେ ଜାତ୍ୟନ୍ତରୀ (ଯୋନ୍ୟନ୍ତରୀ) ଭାଷାର ପ୍ରୟୋଗ କରାଯାଏ ।

ଅଥ ଯୋନ୍ୟନ୍ତରୀ ଭାଷା ଗ୍ରାମାରଣ୍ୟପଶୁଭବା ।
ନାନା-ବିହଙ୍ଗଜା ଚୈବ ନାଟ୍ୟଧର୍ମୀ ପ୍ରତିଷ୍ଠିତା ।।୧୦

**ଜାତିଭାଷା :**

ଭରତମୁନିଙ୍କ ସମୟ ବେଳକୁ ନାଟକରେ ପ୍ରୟୋଗ ହେଉଥିବା ଜାତିଭାଷା ଦୁଇ ପ୍ରକାର ଥିଲା, ଯଥା :ସଂସ୍କୃତ ଓ ପ୍ରାକୃତ । ଏଠାରେ ଲକ୍ଷ୍ୟ କରାଯାଏ ଯେ, ଏହି ଦୁଇଟି ଭାଷାକୁ ଆର୍ଯ୍ୟଭାଷା ମଧ୍ୟରେ ଅନ୍ତର୍ଭୁକ୍ତ କରାଯାଇନାହିଁ । ଏହାକୁ ଜାତିଭାଷା ମଧ୍ୟରେ ସ୍ଥାନିତ କରାଯିବାର କାରଣ ହେଲା ଏହା ଚତୁଃବର୍ଣ୍ଣର ବା ଜାତିର (ବ୍ରାହ୍ମଣ, କ୍ଷତ୍ରୀୟ, ବୈଶ୍ୟ, ଶୁଦ୍ର) ଲୋକମାନଙ୍କଦ୍ୱାରା ପ୍ରୟୋଗ ହେଉଥିଲା । ପୁଣି ଭରତମୁନିଙ୍କ ମତରେ ଏହି ଦୁଇ ପ୍ରକାର ଜାତିଭାଷାରେ ଅନାର୍ଯ୍ୟ ଏବଂ ମ୍ଳେଚ୍ଛମାନଙ୍କ ବ୍ୟବହୃତ ଶବ୍ଦ ମଧ୍ୟ ଥାଏ । ତେଣୁ ଏଠାରେ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ, କେବଳ ପ୍ରାକୃତ ନୁହେଁ, ସଂସ୍କୃତ ଭାଷାରେ ଭାରତର ଅନ୍ୟାନ୍ୟ ଭାଷାର ଶବ୍ଦ ମିଶ୍ରଣ ହୋଇଥାଇପାରେ । ଭାରତର ସମସ୍ତ ଭାଷା ସବୁବେଳେ ସଂସ୍କୃତରୁ ଆହରଣ କରେ ନାହିଁ, କେତେକ ଭାଷା ସଂସ୍କୃତକୁ ଦାନ ମଧ୍ୟ କରେ । କାରଣ ଅନାର୍ଯ୍ୟ (ଯେଉଁମାନେ ଆର୍ଯ୍ୟ ଗୋଷ୍ଠୀର ନୁହନ୍ତି) ଏବଂ ମ୍ଳେଚ୍ଛ ଯେଉଁମାନେ ଅନାର୍ଯ୍ୟ ବିଦେଶୀୟ ବ୍ୟକ୍ତି ବା ଚାତୁର୍ବର୍ଣ୍ୟ ବ୍ୟବସ୍ଥା ଅନ୍ତର୍ଗତ ନୁହନ୍ତି । ଲୋକମାନଙ୍କର କଥିତ ଭାଷାର ଶବ୍ଦ ସଂସ୍କୃତ ଓ ପ୍ରାକୃତରେ ମିଶିଛି ବୋଲି ଭରତମୁନି 'ନାଟ୍ୟଶାସ୍ତ୍ର'ରେ କହିଛନ୍ତି ଅନାର୍ଯ୍ୟ ଓ ମ୍ଳେଚ୍ଛ। ଶବ୍ଦକୁ ଆମେ ସବୁବେଳେ ଅସାଧୁ, ଅଭଦ୍ର, ଅସଭ୍ୟ, ନିକୃଷ୍ଟ, ଘୃଣ୍ୟ, ଇତର, ବର୍ବର, ପାମର, ପାପୀଷ୍ଠ, ଖଳ, କଦାଚାରୀ ଇତ୍ୟାଦି ଅର୍ଥରେ ନ ବୁଝି ମାନବର ପ୍ରକୃତି ଅର୍ଥରେ ବୁଝିବା ଆବଶ୍ୟକ । ଜଣେ ମଣିଷ ବ୍ରାହ୍ମଣ, କ୍ଷତ୍ରୀୟ, ବୈଶ୍ୟ ବା ଶୁଦ୍ର ହୁଅନ୍ତୁ ବା ଚାତୁର୍ବର୍ଣ୍ୟର ବ୍ୟବସ୍ଥାର ବାହାରେ ଥାଆନ୍ତୁ, ତାଙ୍କର ଉପରୋକ୍ତ କୁପ୍ରକୃତି ଥାଇପାରେ । ପୁଣି ଅନାର୍ଯ୍ୟ ଓ ମ୍ଳେଚ୍ଛମାନଙ୍କ ଭାଷାରେ କିଛି ବିଶେଷ ଗୁଣ ଥିବାରୁ ତାହାର ଶବ୍ଦ ସଂସ୍କୃତ ଓ ପ୍ରାକୃତ ଭାଷାରେ ମିଶିପାରେ । ଏ ସମ୍ପର୍କରେ ଭରତମୁନି 'ନାଟ୍ୟଶାସ୍ତ୍ର'ରେ ଲେଖିଛନ୍ତି,

ଦ୍ୱିବିଧା ଜାତିଭାଷା ଚ ପ୍ରୟୋଗେ ସମୁଦାହୃତା ।
ମ୍ଳେଚ୍ଛଶବ୍ଦୋପଚାରା ଚ ଭାରତଂ ବର୍ଷମାଶ୍ରିତା ।। ୧୧

**ଜାତିଭାଷାଶ୍ରୟ ପାଠ୍ୟ**

'ନାଟ୍ୟଶାସ୍ତ୍ର'ରେ ସଂସ୍କୃତ ଓ ପ୍ରାକୃତକୁ ଜାତିଭାଷାଶ୍ରୟ ପାଠ୍ୟ ବୋଲି କୁହାଯାଇଛି । ତେଣୁ ସଂସ୍କୃତ ଓ ପ୍ରାକୃତ ହେଉଛି ଗୋଟିଏ ପଠନୀୟ ଜାତିଭାଷା ।

ଜାତିଭାଷାଶ୍ରୟଂ ପାଠ୍ୟଂ ଦ୍ୱିବିଧଂ ସମୁଦାହୃତମ୍ ।
ପ୍ରାକୃତଂ ସଂସ୍କୃତଞ୍ଚୈବ ଚାତୁର୍ବର୍ଣ୍ୟସମାଶ୍ରୟମ୍ ।। ୧୨

ଏଠାରେ 'ପାଠ୍ୟ' ଶବ୍ଦ ପ୍ରୟୋଗ ହେବାର ତାତ୍ପର୍ଯ୍ୟକୁ ପ୍ରତିପାଦନ କରିବା ନିମନ୍ତେ ଅଭିନବଗୁପ୍ତ କହିଛନ୍ତି,

ପାଠବିଶେଷମହନ୍ତି ଯତ୍ନେନ ବା ପଠନୀୟଂ
ବିଶିଷ୍ଟେନ ରୂପେଣ ବା ପଠନାର୍ହେ

ଆନ୍ତରଚିତ୍ତବୃତ୍ତିବଶାଦେବ ବା ତଥା ପଠିତୁଂ
ଶକ୍ୟମ୍, ଆଚାର୍ଯ୍ୟ ଯତ୍ନେନ ବା
ପଠନୀୟମିତି ପାଠ୍ୟମ୍ । ୧୩

ଅର୍ଥାତ୍, ଯେଉଁ ପାଠର କୌଣସି ବିଶେଷ ଯୋଗ୍ୟତା ଥାଏ ବା ଯେଉଁ ପାଠ ପ୍ରଯତ୍ନପୂର୍ବକ ପଢ଼ାହେବା ଯୋଗ୍ୟ, ବା ଯେଉଁ ପାଠ ବିଶେଷ ରୂପରେ ପଢ଼ାହେବା ଯୋଗ୍ୟ ଅଥବା ଆନ୍ତରିକ ବୃତ୍ତି (ଆନ୍ତରିକତା) କାରଣରୁ ଯେଉଁ ପାଠ ପଢ଼ାଯାଇପାରେ,

ଅଥବା, ଆଚାର୍ଯ୍ୟଙ୍କଠାରୁ ପ୍ରଯତ୍ନ ପୂର୍ବକ ଯେଉଁ ପାଠ ପଢ଼ାହେବା ଯୋଗ୍ୟ, ସେହି ପାଠ ହିଁ 'ପାଠ୍ୟ' ଅଟେ ।

ଏଠାରେ ପାଠ୍ୟ ଶବ୍ଦଟି ପ୍ରତ୍ୟକ୍ଷରେ ଶାସ୍ତ୍ରୀୟ ଭାଷାର ପାଠକୁ ବୁଝାଉଛି । 'ନାଟ୍ୟଶାସ୍ତ୍ର'ରେ ଭରତମୁନି ସଂସ୍କୃତଭାଷାର ପାଠ୍ୟ– ବିଧାନ ବର୍ଣ୍ଣନା କରିବା ସହିତ ପ୍ରାକୃତ ପାଠ୍ୟର ବିଧାନ ମଧ୍ୟ ବର୍ଣ୍ଣନା କରିଛନ୍ତି । ପୁଣି ପ୍ରାକୃତ ପାଠ୍ୟର ବର୍ଣ୍ଣନା କଲାବେଳେ ପ୍ରାକୃତଭାଷା ଓ ବିଭାଷା ଉଭୟର ଲକ୍ଷଣ ଏବଂ ଉଦାହରଣ ପ୍ରଦାନ କରିଛନ୍ତି । ଏଥିରୁ ପ୍ରମାଣିତ ହୁଏ ଯେ, 'ନାଟ୍ୟଶାସ୍ତ୍ର' ବର୍ଣ୍ଣିତ ପ୍ରାକୃତ ଓ ବିଭାଷାଗୁଡ଼ିକ ହେଉଛି ପାଠ୍ୟ ବା ପଠନୀୟ, ଯାହା ଶାସ୍ତ୍ରୀୟ ଭାଷାକୁ ସୂଚିତ କରେ ।

ଏବଂ ତୁ ସଂସ୍କୃତଂ ପାଠ୍ୟ ମୟାପ୍ରୋକ୍ତଂ ସମାସତଃ ।
ପ୍ରାକୃତସ୍ୟ ତୁ ପାଠ୍ୟସ୍ୟ ସଂପ୍ରବକ୍ଷାମି ଲକ୍ଷଣମ୍ ।୧୪

**ପ୍ରାକୃତ ଓ ଅପଭ୍ରଂଶ**

ସଂସ୍କୃତ ପାଠ୍ୟ ଓ ପ୍ରାକୃତ ପାଠ୍ୟର ପ୍ରଭେଦ ଦର୍ଶାଇବା ପାଇଁ ଭରତମୁନି କହିଛନ୍ତି, ଯେ ସଂସ୍କୃତ ପାଠ୍ୟ ଯେତେବେଳେ ବିଭିନ୍ନ ଅବସ୍ଥା ବା ଦଶା କାରଣରୁ ସଂସ୍କାର ଗୁଣରହିତ ହୋଇ ଏକ ପରିବର୍ତ୍ତିତ ବିଶେଷ ସ୍ୱରୂପ ନିଏ, ତାହା ପ୍ରାକୃତ ପାଠ୍ୟ ହୋଇଯାଏ । ତେଣୁ ପ୍ରାକୃତ ହେଉଛି ସଂସ୍କୃତର ଅପଭ୍ରଂଶ ଭାଷା ।

ଏତଦେବ ବିପର୍ଯ୍ୟସ୍ତଂ ସଂସ୍କାରଗୁଣବର୍ଜିତମ୍ ।
ବିଜ୍ଞେୟଂ ପ୍ରାକୃତଂ ପାଠ୍ୟଂ ନାନାବସ୍ଥାନ୍ତରାତ୍ମକମ୍ ।।
ତ୍ରିବିଧଂ ତଚ୍ଚ ବିଜ୍ଞେୟଂ ନାଟ୍ୟଯୋଗେ ସମାସତଃ ।
ସମାନଶବ୍ଦଂ ବିଭ୍ରଷ୍ଟଂ ଦେଶୀଗତମଥାପି ଚ ।୧୫

ଅପ୍ରଭ୍ରଂଶ ଭାଷାର ନିୟମ ସମ୍ବନ୍ଧରେ ସ୍ପଷ୍ଟୀକରଣ ଦେବାକୁ ଯାଇ ଅଭିନବ ଗୁପ୍ତ କହିଛନ୍ତି ଯେ, ଯେଉଁସବୁ ଅବସ୍ଥା କାରଣରୁ ସଂସ୍କୃତ ଭାଷା ସଂସ୍କାର ଗୁଣ ରହିତ ହୁଏ, ସେହି ଅବସ୍ଥା ବିଭିନ୍ନ ଦେଶ (ଦେଶଭାଷା) ସହିତ ସମ୍ବନ୍ଧିତ । କେତେକ ଦେଶରେ (କେତେକ ଭାଷାରେ) ନିୟତ ସ୍ୱଭାବ ଥାଏ କିମ୍ବା ସ୍ୱଭାବର ପ୍ରସିଦ୍ଧି କାରଣରୁ କେତେକ ଦେଶରେ (କେତେକ ଭାଷାରେ) ଅବସ୍ଥାକୁ ନିୟତ କରାଯାଇଥାଏ । ଏହି ପ୍ରକାରରେ ପ୍ରାପ୍ତ ସଂସ୍କୃତ ଭାଷାର ଶବ୍ଦ ହିଁ ବାଚକ ଅଟେ ଏବଂ ପ୍ରାକୃତଭାଷାର ଶବ୍ଦ ଅନୁମାନଦ୍ୱାରା ବାଚକ ହୁଏ, ଅର୍ଥାତ୍, ଅନୁମାନ କରି ଜାଣିହୁଏ ଯେ, ସଂସ୍କୃତର କେଉଁ ଶବ୍ଦଟି ଦେଶଭାଷା ଭେଦରେ ବିଭ୍ରଷ୍ଟ ହୋଇ କିପରି ଭାବରେ ଉଚ୍ଚାରିତ ହେଉଛି ।

ସଂସ୍କୃତମେବ ସଂସ୍କାରଗୁଣେନ ଯତ୍ନେନ
ପରିରକ୍ଷାରୂପେଣ ବର୍ଣ୍ଣିତଂ ପ୍ରାକୃତଂ,
ପ୍ରକୃତେରସଂସ୍କାରରୂପାୟା ଆଗତମ୍ ।
ନନ୍ୱପ୍ରଭ୍ରଂଶାଂନାଂ କୋ ନିୟମ ଇତ୍ୟାହ
ନାନା ୟାନ୍ୟବସ୍ଥାନ୍ତରାଣି ଦେଶବିଶେଷାସ୍ତେଷ୍ୱାତ୍ମା
ନିୟତସ୍ୱଭାବୋ ଯସ୍ୟାଂ,
ଦେଶବିଶେଷେଷୁ ପ୍ରସିଦ୍ଧୟା
ନିୟମିତମିତ୍ୟେବ ସଂସ୍କୃତା ଏବ ବାଚକାଃ
ଅନୁମାନାତ୍ୱନ୍ୟେ ତେ ତ୍ୱନ୍ୟତ୍ୱେ ପ୍ରସିଦ୍ଧିଂ ଗତା ଇତ୍ୟୁକ୍ତମ୍
ଅବତିଷ୍ଠନ୍ତେ[illegible]ନ୍ୟାସ୍ମିନ୍ନିତ୍ୟବସ୍ଥା ଦେଶାଃ ।।୧୬

ଏହି କାରଣରୁ ନାଟ୍ୟରେ ପ୍ରୟୋଗ ହେଉଥିବା ପ୍ରାକୃତକୁ ଭରତମୁନି ତିନି ପ୍ରକାରରେ ବିଭକ୍ତ କରିଛନ୍ତି, ଯଥା: ସମାନ ଶବ୍ଦ ବିଶିଷ୍ଟ, ବ୍ରିଭ୍ରଷ୍ଟ ଶବ୍ଦ ବିଶିଷ୍ଟ ଓ ଦେଶୀଗତ ଶବ୍ଦ ବିଶିଷ୍ଟ ଯାହାକୁ ଯଥାକ୍ରମେ, ତତ୍‌ସମ, ତଦ୍ଭବ ଓ ଦେଶଜ କୁହାଯାଏ । ଏଠାରେ ଗୋଟିଏ କଥା ଲକ୍ଷ୍ୟ କରାଯାଏ ଯେ, ପ୍ରାକୃତରେ କେବଳ ସଂସ୍କୃତ ଶବ୍ଦ କିମ୍ବା ତାହାର ବିଭ୍ରଷ୍ଟ ଶବ୍ଦ ବ୍ୟବହାର ହୁଏନାହିଁ, ତା ସହିତ ଦେଶଜ ଶବ୍ଦ ମଧ୍ୟ ବ୍ୟବହାର ହୁଏ । ଏହି 'ଦେଶଜ– ଶବ୍ଦ' ସଂସ୍କୃତରୁ ଆସେନାହିଁ, ଏହା ଭାରତର ବିଭିନ୍ନ ଆଞ୍ଚଳିକ ଭାଷାରୁ ବା ବିଭାଷାରୁ ଆସେ । ଏଠାରେ କହିବା ବାହୁଲ୍ୟ ଯେ, ଗୋଟିଏ ପ୍ରାକୃତ ଭାଷାରେ କେବଳ ଏକ ନୁହେଁ, ଏକାଧିକ ବିଭାଷାର ଶବ୍ଦ ମିଶିପାରେ । ଯେଉଁ ବିଭାଷାଗୁଡ଼ିକର ନିୟତ ସ୍ୱଭାବ (ଲକ୍ଷଣ) ଅଛି କିମ୍ବା ଯେଉଁଗୁଡ଼ିକର ସ୍ୱଭାବକୁ ନିୟତ କରାଯାଇଛି, ସେହି ବିଭାଷାଗୁଡ଼ିକ ଶାସ୍ତ୍ରୀୟ ନାଟ୍ୟରେ ପ୍ରୟୋଗ ହୋଇପାରେ । ଏ ସମ୍ବନ୍ଧରେ ଅଭିନବ ଗୁପ୍ତ ବ୍ୟାଖ୍ୟାକରି କହିଛନ୍ତି ଯେ, ସଂସ୍କୃତ ସହିତ ପ୍ରାକୃତର ପ୍ରତିପାଦିତ ଶବ୍ଦର ସମାନତା ଥିଲେ ମଧ୍ୟ ବିଭକ୍ତିରେ ସ୍ୱରର (ଉଚ୍ଚାରଣର) ବିପର୍ଯ୍ୟାସ (ବ୍ୟତିକ୍ରମ) ରହିବା ସ୍ୱାଭାବିକ । ସେହିପରି ଦେଶୀପଦର ପ୍ରୟୋଗ କାଳରେ ଦେଶଜ ଶବ୍ଦର ସ୍ୱରଗତ (ଧ୍ୱନିଗତ ବା ଉଚ୍ଚାରଣ ଭେଦଯୁକ୍ତ) ସମ୍ବନ୍ଧ ରହିବା ଆବଶ୍ୟକ ଅଟେ । ତେଣୁ ଦେଶୀପଦ (ବିଭାଷା) ମଧ୍ୟ ପ୍ରାକୃତ ଅଟେ । ଏପରିକି କେହି କେହି ଲୋକ ଅବ୍ୟୁତ୍ପନ୍ନ (ବ୍ୟୁତ୍ପତ୍ତିହୀନ) ପ୍ରକୃତିରୁ ପ୍ରାପ୍ତ, କିମ୍ବା ଅବ୍ୟୁତ୍ପନ୍ନ (ଅଶିକ୍ଷିତ, ଅଜ୍ଞ, ବ୍ୟାକରଣ ଅନଭିଜ୍ଞ, ଶବ୍ଦାର୍ଥାନଭିଜ୍ଞ) ଲୋକମାନଙ୍କଦ୍ୱାରା ପ୍ରଯୁଜ୍ୟ ଭାଷାକୁ ପ୍ରାକୃତ କହନ୍ତି ।

ସଂସ୍କୃତେ ସମେ[illegible] ପ୍ରାତିପଦିକେ ବିଭକ୍ତୌ
ଭବିତବ୍ୟଂ ବିପର୍ଯ୍ୟାସେନ ସ୍ୱରେଣ ବା ଦେଶୀପଦମପି
ସ୍ୱରସ୍ୟୈବ ପ୍ରୟୋଗାବସରେ ପ୍ରଯୁଜ୍ୟତ ଇତି ତଦାପି

ପ୍ରାକୃତମେବ ଅବ୍ୟୁତ୍ପାଦିତ ପ୍ରକୃତେସ୍ତଜ୍ଜନ
ପ୍ରୟୋଜ୍ୟତ୍ୱାତ୍ ପ୍ରାକୃତମିତି କେଚିତ୍ । ୧୭

ଏଥିରୁ ପ୍ରମାଣିତ ମିଳେ ଯେ ବିଭାଷାଗୁଡ଼ିକର ଶବ୍ଦ ପ୍ରାକୃତରେ ଦେଶୀଗତ ଶବ୍ଦ ଭାବରେ ପ୍ରୟୋଗ ହୁଏ ଏବଂ ଉଡ୍ର ବା ଓଡ଼ିଆ ସମେତ ଅନ୍ୟାନ୍ୟ ବିଭାଷା ମଧ୍ୟ ପ୍ରାକୃତ ହୋଇପାରେ, ଯେଉଁଥିରେ ତତ୍‌ସମ, ତଦ୍ଭବ ଓ ଦେଶଜ ଶବ୍ଦର ପ୍ରୟୋଗ ହୁଏ । ପୁଣି ଗୋଟିଏ ଭାଷାର ଶବ୍ଦ ଅନ୍ୟ ଭାଷାରେ ମିଶିଲେ, ତାହା ଅନ୍ୟ ଭାଷାଭାଷୀ ଦେଶର ସ୍ୱରଗତ ବା ଉଚ୍ଚାରଣଗତ ଧ୍ୱନିଦ୍ୱାରା ପ୍ରଭାବିତ ହୁଏ । ତେଣୁ ଗୋଟିଏ ଭାଷାର ଶବ୍ଦଗୁଡ଼ିକର ଧ୍ୱନିଗତ ଉଚ୍ଚାରଣ ଚିରକାଳ ସମାନ ରହି ନପାରେ ।

**ପ୍ରାକୃତ ଓ ବିଭାଷା**

ଜାତିଭାଷା ମଧ୍ୟରେ ସଂସ୍କୃତ ବ୍ୟତୀତ ଯେଉଁ ପ୍ରାକୃତ ଭାଷାଗୁଡ଼ିକ ଅନ୍ତର୍ଭୁକ୍ତ, ସେମାନଙ୍କ ମଧ୍ୟରୁ ସାତଟି ମୁଖ୍ୟ ପ୍ରାକୃତ ଭାଷା ହେଲା: ମାଗଧୀ, ଅବନ୍ତୀ, ପ୍ରାଚ୍ୟା, ସୌରସେନୀ ବା ଶୂରସେନୀ, ଅର୍ଦ୍ଧମାଗଧୀ, ବାହ୍ଲୀକା ଓ ଦାକ୍ଷିଣାତ୍ୟା । ଏହା ବ୍ୟତୀତ ଅନ୍ୟାନ୍ୟ ପ୍ରାକୃତ ଭାଷା ନଥିଲା ବୋଲି କହିହେବ ନାହିଁ । ଯେମିତି ମହାରାଷ୍ଟ୍ରୀ ପ୍ରାକୃତ ଏକ ପ୍ରମୁଖ ଭାଷା ହୋଇଥିଲେ ମଧ୍ୟ 'ନାଟ୍ୟଶାସ୍ତ୍ର'ରେ ଏହାର ଉଲ୍ଲେଖ ନାହିଁ । ଯଦି ସଂସ୍କୃତ ଓ ପ୍ରାକୃତ ଭାଷାଗୁଡ଼ିକ ଜାତିଭାଷା ହୁଏ, ବିଭାଷାଗୁଡ଼ିକ କେଉଁ ପ୍ରକାର ଭାଷା ହେବ ? ଏହାର ଉତ୍ତରରେ ନିଃସନ୍ଦେହରେ କୁହାଯାଇ ପାରେ ଯେ ବିଭାଷାଗୁଡିକ ମଧ୍ୟ ସ୍ୱତନ୍ତ୍ର, ସ୍ୱୟଂସମ୍ପୂର୍ଣ୍ଣ ଜାତିଭାଷା ଅଟେ । କାରଣ ଯଦି ସଂସ୍କୃତ ଓ ପ୍ରାକୃତକୁ ଅତିଭାଷା କିମ୍ବା ଆର୍ଯ୍ୟଭାଷା ମଧ୍ୟରେ ଅନ୍ତର୍ଭୁକ୍ତ ନକରି ଭରତମୁନି ଜାତିଭାଷା ମଧ୍ୟରେ ଅନ୍ତର୍ଭୁକ୍ତ କଲେ, ତେବେ ବିଭାଷାଗୁଡିକ ଅଭିଭାଷା କିମ୍ବା ଆର୍ଯ୍ୟ ଭାଷାରେ ଅନ୍ତର୍ଭୁକ୍ତ ହେବା ଯୁକ୍ତିସଙ୍ଗତ ନୁହେଁ । ତାହା ଜାତିଭାଷା ହେବ, କାରଣ ବିଭାଷାଗୁଡ଼ିକ ଜାତ୍ୟନ୍ତରୀ ଭାଷା ମଧ୍ୟ ନୁହେଁ । ପୁଣି ଭରତମୁନି 'ନାଟ୍ୟଶାସ୍ତ୍ର'ରେ ଜାତିଭାଷା ବିଷୟରେ ଆଲୋଚନା କଲାବେଳେ ସାତଟି ମୁଖ୍ୟ ପ୍ରାକୃତ ଭାଷା ସହିତ ୭ଟି ବିଭାଷାର ନାମ ଓ ଲକ୍ଷଣ ଉଲ୍ଲେଖ କରିଛନ୍ତି ଏବଂ କହିଛନ୍ତି, "ନାଟକର ନିର୍ଦ୍ଦେଶକ ନିଜ ଇଚ୍ଛା ଅନୁସାରେ ଗୋଟିଏ ଗୋଟିଏ ଦେଶଭାଷା, ଅର୍ଥାତ୍, ପ୍ରାଦେଶିକ ଭାଷା ବା ଲୋକଭାଷା ପ୍ରୟୋଗ କରିବେ, ଯେହେତୁ ନାଟକଟିଏ ବିଭିନ୍ନ ପ୍ରଦେଶର ଭାଷାରେ ରଚିତ କାବ୍ୟ ହେବା ଆବଶ୍ୟକ ।"

ଅଥବା ଛନ୍ଦତଃ କାର୍ଯ୍ୟା ଦେଶଭାଷା ପ୍ରୟୋକ୍ତୃଭିଃ ।
ନାନାଦେଶ ସମୁତ୍ଥଂ ହି କାବ୍ୟଂ ଭବତି ନାଟକେ ।।
ମାଗଧ୍ୟବନ୍ତିଜା ପ୍ରାଚ୍ୟା ସୂରସେନ୍ୟର୍ଧମାଗଧୀ ।
ବାହ୍ଲୀକା ଦାକ୍ଷିଣାତ୍ୟ ଚ ସପ୍ତ ଭାଷାଃ ପ୍ରକୀର୍ତିତାଃ ।।
ଶବରାଭୀରଚଣ୍ଡାଳସଚରଦ୍ରବିଡ଼ୋଡ୍ରଜାଃ ।
ହୀନା ବନେଚରାଣାଂ ଚ ବିଭାଷା ନାଟକେ ସ୍ମୃତ ।।୧୮

**ବିଭାଷା ଓ ଦେଶଭାଷା**

ଭରତମୁନି ଉପରୋକ୍ତ ଶ୍ଳୋକରେ ଯେଉଁ 'ଦେଶଭାଷା' ଶବ୍ଦର ପ୍ରୟୋଗ କରିଛନ୍ତି, ତାହା ଅତିଭାଷା, ଆର୍ଯ୍ୟଭାଷା, ଜାତିଭାଷା, ଜାତ୍ୟନ୍ତରୀ ଭାଷା, ଲୋକଭାଷା କିମ୍ବା, ପ୍ରାଦେଶିକ ଭାଷା ମଧ୍ୟରୁ କେଉଁଟି ହେବ ତାହା ବିଚାର୍ଯ୍ୟ । ଜାତ୍ୟନ୍ତରୀ ଭାଷା ବ୍ୟତୀତ 'ନାଟ୍ୟଶାସ୍ତ୍ର'ରେ ବର୍ଣ୍ଣିତ ଅନ୍ୟ ଭାଷାଗୁଡ଼ିକ ଦେଶଭାଷା ଅଟେ । ଜାତ୍ୟନ୍ତରୀ ଭାଷା ଦେଶର କୌଣସି ଜନଜାତିଙ୍କ ଦ୍ୱାରା କଥିତ ହୁଏ ନାହିଁ । ତେଣୁ ତାହା ଜାତିଭାଷା ନୁହେଁ କି ଲୋକଙ୍କର ଦେଶଭାଷା ନୁହେଁ । ଏକ ପ୍ରାଦେଶିକ ଭାଷା ହେଉ କି ଲୋକଭାଷା ହେଉ ତାହା ଦେଶଭାଷା ଅଟେ । ଗୋଟିଏ ଦେଶରେ ପ୍ରଚଳିତ ଲୋକଙ୍କର ଭାଷା ହେଉଛି 'ଦେଶଭାଷା', ଯାହା ଯେକୌଣସି ପ୍ରଦେଶରେ ପ୍ରୟୋଗ ହୋଇପାରେ । ଏକ ଦେଶରେ ପ୍ରଚଳିତ ଥିବା ରାଜାଙ୍କ ଭାଷା ଓ ପ୍ରଜାଙ୍କ ଭାଷା ସବୁଗୁଡ଼ିକ ଦେଶଭାଷା । ଏହି 'ଦେଶଭାଷା' ମଧ୍ୟରେ ସଂସ୍କୃତ, ପ୍ରାକୃତ ଓ ବିଭାଷା ଅନ୍ତର୍ଭୁକ୍ତ । ପୁଣି ଏହି ତିନିଟି ଜାତିଭାଷା ଅଟେ । ଜାତିଭାଷା ମଧ୍ୟରୁ ଯେଉଁଗୁଡ଼ିକ 'ନାଟ୍ୟଶାସ୍ତ୍ର'ରେ ବର୍ଣ୍ଣିତ ହୋଇଛି ସେଗୁଡ଼ିକ ଶାସ୍ତ୍ରୀୟ ଭାଷା ଅଟେ ।

ଶାସ୍ତ୍ରୀୟ ଜାତିଭାଷା ବ୍ୟତୀତ ଅନ୍ୟ 'ଦେଶଭାଷା' ମଧ୍ୟ ଅଛି । କାରଣ 'ନାଟ୍ୟଶାସ୍ତ୍ର'ରେ ଭାରତର ସମସ୍ତ ଭାଷାର ଚର୍ଚ୍ଚା ହୋଇନାହିଁ । ମତଙ୍ଗ ମୁନି ତାଙ୍କର 'ବୃହଦ୍ଦେଶୀ' ଗ୍ରନ୍ଥରେ 'ଦେଶଭାଷା' ବିଷୟରେ ଆଲୋଚନା କରି କହିଛନ୍ତି ଯେ, 'ଦେଶଭାଷା' ରେ 'କ' ଠାରୁ ଆରମ୍ଭ କରି 'କ୍ଷ' ପର୍ଯ୍ୟନ୍ତ ବ୍ୟଞ୍ଜନ ବର୍ଣ୍ଣଗୁଡ଼ିକ ସ୍ୱରବର୍ଣ୍ଣ ଦ୍ୱାରା ଯଥାବିଧି ଉଚ୍ଚାରିତ ହୋଇ ଲୋକମାନଙ୍କ ଭାଷାରେ ବା ଆଞ୍ଚଳିକ ଭାଷାରେ ପରିସ୍ଫୁଟ ହୁଏ ।

ସ୍ୱର୍ଯତେ ଦେଶଭାଷାୟାଂ କାଦିକ୍ଷାନ୍ତଂ ଯଥାବିଧି । ୧୯

'ଦେଶଭାଷା' ବିଷୟରେ ସ୍ପଷ୍ଟିକରଣ ଦେଇ ଉକ୍ତ ଗ୍ରନ୍ଥର ସମ୍ପାଦିକା ଡ଼. ପ୍ରେମଲତା ଶର୍ମା କହିଛନ୍ତି ଯେ, 'ଦେଶଭାଷା'ର ସାହିତ୍ୟିକ ଅର୍ଥ ହେଲା ଆଞ୍ଚଳିକ ଭାଷା । କେବଳ ଭାଷା କହିଲେ ପରମ୍ପରା ଅନୁସୃତ ସାଧାରଣ ଲୋକାମାନଙ୍କ ଭାଷାକୁ ବୁଝାଏ । ବୈଦିକ ସଂସ୍କୃତ ସହ ତୁଳନୀୟ ସଂସ୍କୃତ

ଗୋଟିଏ ଭାଷା ଅଟେ । ସେହିପରି ସଂସ୍କୃତ ଭାଷା ସହିତ ତୁଳନୀୟ ଆଞ୍ଚଳିକ ଭାଷାଗୁଡ଼ିକ ମଧ୍ୟ ଗୋଟିଏ ଗୋଟିଏ ଭାଷା ଅଟେ । ତେଣୁ ଦେଶଭାଷା କହିଲେ ସଂସ୍କୃତ ଓ ଆଞ୍ଚଳିକ ଭାଷା ଉଭୟକୁ ବୁଝାଏ ।

Desabhasa lit. means regional language.

Bhasa is conventionaly used for the language of the common people.

Laukika (classical) Sanskrit is called bhasa as compared to Vedic Sanskrit and regional languages have been known as bhasa as compared to Sanskrit. Here both Sanskrit and regioinal languages seem to be implied.20

ଡ଼. ଶର୍ମାଙ୍କ ମତରେ ଲୌକିକ ସଂସ୍କୃତ ହେଉଛି ଶାସ୍ତ୍ରୀୟ । ତେଣୁ ସଂସ୍କୃତ ପ୍ରଭାବିତ ପ୍ରାକୃତ ଭାଷା ଗୁଡ଼ିକ ମଧ୍ୟ ଶାସ୍ତ୍ରୀୟ ଅଟେ । 'ନାଟ୍ୟଶାସ୍ତ୍ର'ରେ ସଂସ୍କୃତ ଓ ପ୍ରାକୃତ ବ୍ୟତୀତ କେତେକ ବିଭାଷାକୁ ସଂସ୍କୃତ ଓ ପ୍ରାକୃତ ଭଳି ଜାତିଭାଷା ମଧ୍ୟରେ ଅନ୍ତର୍ଭୁକ୍ତ କରାଯାଇଛି । ଉଡ୍ରବିଭାଷା ଏକ ପ୍ରମୁଖ ଦେଶଭାଷା ହୋଇଥିବାରୁ ଏବଂ 'ନାଟ୍ୟଶାସ୍ତ୍ର'ରେ ବର୍ଣ୍ଣିତ ହୋଇଥିବାରୁ ଶାସ୍ତ୍ରୀୟ ଅଟେ ।

**ଉଡ୍ରବିଭାଷା :** 'ନାଟ୍ୟଶାସ୍ତ୍ର'ର ପ୍ରାୟ ସମସ୍ତ ସଂସ୍କରଣରେ ସପ୍ତପ୍ରାକୃତ ଭାଷା ଭାବରେ ମାଗଧୀ, ଅବନ୍ତୀ, ପ୍ରାଚ୍ୟା, ସୌରସେନୀ, ଅର୍ଦ୍ଧମାଗଧୀ, ବାହ୍ଲୀକା ଓ ଦାକ୍ଷିଣାତ୍ୟା ଭାଷାର ନାମ ପ୍ରଦାନ କରାଯାଇଛି । କିନ୍ତୁ ବିଭାଷା ତାଲିକାରେ କେତେକ ସଂସ୍କରଣରେ ଶବର, ଆଭୀର, ଚଣ୍ଡାଳ, ସଚର, ଦ୍ରାବିଡ଼, ଉଡ୍ର ଓ ବନଚାରୀ ବିଭାଷାର ନାମ ଥିବାବେଳେ, ଅନ୍ୟ କେତେକ ସଂସ୍କରଣରେ ଶାକାରୀ, ଆଭୀରୀ, ଚାଣ୍ଡାଳୀ, ଶାବରୀ, ଦ୍ରାବିଡ଼ୀ, ଆନ୍ଧ୍ରୀ ଓ ବନଚାରୀ ବିଭାଷାର ନାମ ଉଲ୍ଲେଖ ଅଛି । ଅର୍ଥାତ୍, 'ସଚର' ସ୍ଥାନରେ 'ଶାକାରୀ' ଓ 'ଉଡ୍ର' ସ୍ଥାନରେ 'ଆନ୍ଧ୍ରୀ' ଅଛି । ଯଥା,

ଶବରାଭୀରଚଣ୍ଡାଳସଚରଦ୍ରବିଡ଼ୋଦ୍ର (ଡ୍ର) ଜାଃ ।
ହୀନା ବନେଚରାଣାଂ ଚ ବିଭାଷା ନାଟକେ ସ୍ମୃତା ।।୨୧
ଶକାରୀ ଭୀର-ଚାଣ୍ଡାଳ ଶବରଦ୍ରମିଳାନ୍ଧ୍ରଜାଃ ।
ହୀନା ବନେଚରଣାଞ୍ଚ ବିଭାଷା ନାଟକେ ସ୍ମୃତାଃ ।।୨୨

ତେଣୁ ବିଭାଷା ସଂଖ୍ୟା ସାତ ହେଉ ବା ନଅ ହେଉ ବା ତତୋଧିକ ହେଉ, ଉଡ୍ରବିଭାଷା 'ନାଟ୍ୟଶାସ୍ତ୍ର'ରେ ସ୍ଥାନ ପାଇଛି । ଆନ୍ଧ୍ରୀ ଓ ଦ୍ରାବିଡ଼ୀ ବିଭାଷାର ପ୍ରାକୃତ ଭାଷା ହେଲା ଦାକ୍ଷିଣାତ୍ୟା ଓ ଉଡ୍ର ବିଭାଷାର ପ୍ରାକୃତ ଭାଷା ହେଲା ଅର୍ଦ୍ଧମାଗଧୀ ବା ଉଡ୍ରମାଗଧୀ । ପୁଣି ମାଗଧୀ ଓ ଅର୍ଦ୍ଧମାଗଧୀ ହେଲା ଗୋଟିଏ ଗୋଟିଏ ସ୍ୱତନ୍ତ୍ର ପ୍ରାକୃତଭାଷା । ଅର୍ଦ୍ଧମାଗଧୀ ପ୍ରାକୃତ ବିଶେକରି ଭାରତର ପ୍ରାଚ୍ୟ ଭୂଖଣ୍ଡ ବା ପୂର୍ବାଞ୍ଚଳରେ ବିକାଶ ଲାଭ କରିଥିଲେ ମଧ୍ୟ ପ୍ରାଚ୍ୟା ନାମକ ଅନ୍ୟ ଏକ ପ୍ରାକୃତ ଭାଷା ଅଛି । ପୁଣି ମାଗଧୀ ପ୍ରାକୃତ ମଧ୍ୟ ଭାରତର ସେହି ପ୍ରାଚ୍ୟ ଭୂଖଣ୍ଡ ମଗଧରେ ବିକସିତ ହୋଇଥିଲା । କିନ୍ତୁ ଉଡ୍ର ବିଭାଷାର ବୈଶିଷ୍ଟ୍ୟ ଏତେ ଥିଲା ଯେ, ଉଡ୍ର-ବିଭାଷା ଓ ଅର୍ଦ୍ଧମାଗଧୀ-ପ୍ରାକୃତ ଉଭୟ 'ନାଟ୍ୟଶାସ୍ତ୍ର'ରେ ସ୍ଥାନ ପାଇଛି । ଦେଶ ଦୃଷ୍ଟିରୁ ଉଡ୍ର ଏକ କ୍ଷୁଦ୍ର ରାଜ୍ୟ ଥିଲା, କିନ୍ତୁ ଭାଷା ଦୃଷ୍ଟିରୁ ଉଡ୍ର ଏକ ବିଶାଳ ଭାଷା, ଯାହା ଉଡ୍ର, କଳିଙ୍ଗ, ଉତ୍କଳ, ତୋଷଳ, ଦକ୍ଷିଣକୋଶଳ, କଙ୍ଗୋଦ, ଆଦି ବିଭିନ୍ନ ସାମ୍ରାଜ୍ୟର ପ୍ରମୁଖ ଭାଷା ଥିଲା । କଳିଙ୍ଗ ଓ ଉତ୍କଳ ସାମ୍ରାଜ୍ୟ ବହୁକାଳ ଧରି ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା ।

**ଉଡ୍ରମାଗଧୀ ପ୍ରବୃତ୍ତି ଓ ଉଡ୍ରବିଭାଷା**

'ନାଟ୍ୟଶାସ୍ତ୍ର'ରେ ବର୍ଣ୍ଣିତ ଚାରିଟି ନାଟ୍ୟପ୍ରବୃତ୍ତି (ଆବନ୍ତୀ, ପାଞ୍ଚାଳୀ, ଦାକ୍ଷିଣାତ୍ୟା, ଉଡ୍ରମାଗଧୀ) ମଧ୍ୟରେ ଉଡ୍ରମାଗଧୀ ଅନ୍ୟତମ ଅଟେ । ଓଡ଼ିଆ ଭାଷା ବିଷୟରେ ଆଲୋଚନା କଲାବେଳେ ପ୍ରବୃତ୍ତି ବିଷୟରେ ଆଲୋକପାତ କରିବାର ପ୍ରାସଙ୍ଗିକତା ହେଲା ଯେ, କୌଣସି ପ୍ରବୃତ୍ତିର ସ୍ୱତନ୍ତ୍ରତା ନିର୍ଦ୍ଧାରଣ କରିବା ପାଇଁ ଭାଷାର ବୈଶିଷ୍ଟ୍ୟକୁ ମଧ୍ୟ ଗୁରୁତ୍ୱ ଦିଆଯାଏ । ତେଣୁ ଉଡ୍ରମାଗଧୀ ପ୍ରବୃତ୍ତିରେ ଉଡ୍ରବିଭାଷା ପ୍ରୟୋଗ ହେଉଥିଲା ।

ଚତୁର୍ବିଧା ପ୍ରବୃତ୍ତିଶ୍ଚ ପ୍ରୋକ୍ତା ନାଟ୍ୟପ୍ରୟୋକ୍ତୃଭିଃ ।
ଆବନ୍ତୀ ଦାକ୍ଷିଣାତ୍ୟ ଚ ପାଞ୍ଚାଳୀ ଚୋଡ୍ରମାଗଧୀ ।।
ଅତ୍ରାହ-ପ୍ରବୃତ୍ତିରିତି କସ୍ମାତ୍ ?
ଉଚ୍ୟତେ-ପୃଥିବ୍ୟାଂ ନାନା ଦେଶ ବେଷ ଭାଷାଚାରା
ବାର୍ତ୍ତାଃ ଖ୍ୟାପୟତୀତି ପ୍ରବୃତ୍ତିଃ ନିବେଦନେ ।୨୩

ଯଥା ହ୍ୟପପ୍ରୟେଗସ୍ତୁ ପ୍ରଯୁକ୍ତୋ କ୍ଷଣାତ୍ ।
ଇତ୍ୟେବାବନ୍ତୀପାଞ୍ଚାଳଦାକ୍ଷିଣାତ୍ୟଡ୍ରୋମାଗଧୈଃ ।।୨୪

ପୂର୍ବରଙ୍ଗର ଯଥାଯଥ ବିଧି ସମ୍ପର୍କରେ ବ୍ୟାଖ୍ୟା କରି ଅଭିନବ ଗୁପ୍ତ କହିଛନ୍ତି ଯେ, ରୂପକର ନାୟକ ଯେଉଁ ପ୍ରକାର

ପ୍ରବୃତ୍ତିର ନିୟମ ପାଳନ କରୁଥିବେ, ସୂତ୍ରଧାରଠାରୁ ଆରମ୍ଭକରି ସ୍ଥାପକ ପର୍ଯ୍ୟନ୍ତ ସମସ୍ତ ପାତ୍ର ସେହି ପ୍ରବୃତ୍ତିର ବେଶ, ଭାଷା, ଆଚାର ଓ ଅଭିନୟର ଅନୁବର୍ତ୍ତନ କରିବେ । ତେଣୁ ପ୍ରବୃତ୍ତି ନିର୍ଦ୍ଧାରଣ କରିବା ପାଇଁ ବିଭିନ୍ନ ଭାଷାକୁ ମଧ୍ୟ ଗୁରୁତ୍ୱ ଦିଆଯାଏ ଏବଂ ଭିନ୍ନ ଭିନ୍ନ ପ୍ରବୃତ୍ତିରେ ଭିନ୍ନ ଭିନ୍ନ ଭାଷା ପ୍ରୟୋଗ ହୁଏ ।

ଯାଦୃକ୍‌ପ୍ରବୃତ୍ତିବିଶେଷେ ନିୟତୋ
ରୂପକନାୟକୋ ଭବିଷ୍ୟତି ତାଦୃକ୍‌ପ୍ରବୃତ୍ତି
ସମୁଚିତ ବେଶଭାଷାଚାରାଭିନୟାଦିକ ମନୁବର୍ତ୍ତମାନୈଃ
ସୂତ୍ରଧାରାଦିଭିଃ ସ୍ଥାପକାନ୍ତୈଃ ।।୨୫

ଚାରିଟି ନାଟ୍ୟ ପ୍ରବୃତ୍ତି ମଧ୍ୟରେ 'ଉଡ୍ରମାଗଧୀ' ପ୍ରବୃତ୍ତିର ପ୍ରଚଳନ ଅନ୍ୟାନ୍ୟ ପ୍ରବୃତ୍ତି ତୁଳନାରେ ଅଧିକ ଅଞ୍ଚଳରେ ବ୍ୟାପ୍ତ ଥିଲା, ଯଥା : ଅଙ୍ଗ, ବଙ୍ଗ, କଳିଙ୍ଗ, ଉଡ୍ର, ମଗଧ, ବସ୍ତ୍ର, ପୁଣ୍ଡ୍ର, ନେପାଳ, ଅନ୍ତର୍ଗିରି, ବହିର୍ଗିରି, ପ୍ଳବଙ୍ଗମ, ମଳଦା, ମଲ୍ଲ, ବର୍ତକ, ବହ୍ମୋତ୍ତର, ଭାର୍ଗବ, ମାର୍ଗବ, ପ୍ରାଗଜ୍ୟୋତିଷ, ପୁଳିନ୍ଦ, ବିଦେହ, ତାମ୍ରଲିପ୍ତୀ ଓ ପୁରାଣମାନଙ୍କରେ ଯାହାକୁ ପୂର୍ବୀୟ ଦେଶ ବୋଲି କୁହାଯାଇଛି ।

ଅଙ୍ଗା ବଙ୍ଗାଃ କଳିଙ୍ଗାଶ୍ଚ ବସ୍ତାଶ୍ଚୈବୋଡ୍ରମାଗଧାଃ ।
ପୌଣ୍ଡ୍ରନେପାଳକାଶ୍ଚୈବ ଅନ୍ତର୍ଗିରବହିର୍ଗିରାଃ ।।
ତଥା ପ୍ଳବଙ୍ଗମା ଜ୍ଞେୟା ମଳଦା ମଲ୍ଲବର୍ତକାଃ ।
ବହ୍ମୋତ୍ତର ପ୍ରଭୃତୟୋ ଭାର୍ଗବା ମାର୍ଗବାସ୍ତଥା ।।
ପ୍ରାଗଜ୍ୟୋତିଷାଃ ପୁଲିଦାଶ୍ଚ ବୈଦେହାସ୍ତାମ୍ରଲିପ୍ତକାଃ ।
ପ୍ରାଙ୍ଗାଃ ପ୍ରାବୃତୟଶ୍ଚୈବ ଯୁଞ୍ଜନ୍ତୀହୌଡ୍ରମାଗଧୀମ୍ ।।
ଅନ୍ୟେଽପି ଦେଶାଃ ପ୍ରାଚ୍ୟା ଯେ ପୁରାଣେ ସମ୍ପ୍ରକୀର୍ତିତାଃ ।
ତେଷୁ ପ୍ରଯୁଜ୍ୟତେ ହ୍ୟେଷା ପ୍ରବୃତ୍ତି ଶ୍ଚୋଡ୍ରମାଗଧୀ ।।୨୬

ଏଥିରୁ ଜଣାଯାଉଛି ଯେ, ପୁରାଣ ଯୁଗରେ ମଧ୍ୟ ଉଡ୍ରମାଗଧୀ ପ୍ରବୃତ୍ତି ଓ ଉଡ୍ରଭାଷାର ପ୍ରଚଳନ ଥିଲା, ଯାହା ନାଟକ ମାଧ୍ୟମରେ ଭାରତର ଅର୍ଦ୍ଧାଧିକ ଅଞ୍ଚଳରେ ପ୍ରଚାରିତ ହେଉଥିଲା ।

ଉଡ୍ର ଓ ମଗଧ ସମେତ ଏତେଗୁଡ଼ିଏ ପ୍ରଦେଶରେ ଉଡ୍ରମାଗଧୀର ପ୍ରଚଳନ ଥିଲେ ମଧ୍ୟ ପ୍ରବୃତ୍ତିର ନାମକାରଣ ଅନ୍ୟାନ୍ୟ ଦେଶର ନାମ ଅନୁସାରେ ନାମିତ ନ ହୋଇ ଉଡ୍ର ଓ ମଗଧ ଅନୁସାରେ ହୋଇଛି । ଏହାର ତାତ୍ପର୍ଯ୍ୟ ହେଲା, ଗୀତା, ବାଦ୍ୟ, ନୃତ୍ୟ, ନାଟକ, ଅଭିନୟ ଓ ଭାଷା-କାବ୍ୟ ବ୍ୟବହାରରେ ଏହି ଦୁଇଟି ଦେଶ ଅଗ୍ରଣୀ ଥିଲେ । ଏହି ସମସ୍ତ ଦେଶରେ ଉଡ୍ରଭାଷାର ପ୍ରଚଳନ ନ ଥାଇପାରେ, କିନ୍ତୁ କଳିଙ୍ଗ ଓ ଉଡ୍ରରେ ଉଡ୍ରଭାଷା ନିଶ୍ଚୟ ଥିଲା । କାରଣ ସେତେବେଳେ ଭାରତର ପୂର୍ବ ପ୍ରଦେଶମାନଙ୍କରେ ପ୍ରଚଳିତ ଉଡ୍ରମାଗଧୀ ପ୍ରବୃତ୍ତିରେ ବାକ୍ୟ ଆଡ଼ମ୍ବର ପ୍ରଧାନ ଥିଲା ଏବଂ ଭାରତୀ ଓ ଆରଭଟ୍ଟୀ ବୃତ୍ତିର ସଂଯୋଗ ହେଉଥିଲା । ଏ ସମ୍ବନ୍ଧରେ ଅଭିନବ ଗୁପ୍ତ ଲେଖିଛନ୍ତି,

ପ୍ରାଚ୍ୟେଷୁ ତୁ ଘଟାଟୋପବାକ୍ୟାଡ଼ମ୍ବର
ପ୍ରାଧାନ୍ୟାଦ୍ ଭାରତ୍ୟାରଭଟ୍ୟୋଃ ଯୋଗଃ ।୨୭

ଏହାର ସ୍ପଷ୍ଟୀକରଣ ହେଇ ଅଭିନବ ଗୁପ୍ତ କହିଛନ୍ତି ଯେ ଭାରତର ପ୍ରାଚ୍ୟଦେଶର ସୀମା ଦକ୍ଷିଣରେ ସମୁଦ୍ରତଟବର୍ତ୍ତୀ ଉଡ୍ର ଓ ଉତ୍ତରରେ ମଗଧ ଥିଲା । ଏହି ଉଭୟ ପ୍ରଦେଶର ମଧ୍ୟବର୍ତ୍ତୀ ଅଞ୍ଚଳରେ ଉଡ୍ରମାଗଧୀ ପ୍ରବୃତ୍ତିର ପ୍ରଚଳନ ଥିଲା । ସେଥିପାଇଁ ଉଡ୍ର ଓ କଳିଙ୍ଗ ଉଭୟର ଉପଜୀବ୍ୟ ହୋଇଥିବାରୁ ଏଥିରେ ଦୁଇ ଦୁଇଟି ବୃତ୍ତିର (ଭାରତୀ ଓ ଆରଭଟ୍ଟୀ) ପରିଗଣନା କରାଯାଇଛି ।

ତତ୍ର ପ୍ରାଗ୍‌ଦଶାନାଂ ସୀମାତ୍ୱେନ ଦକ୍ଷିଣତ
ଉଡ୍ରାଃ ସମୁଦ୍ର ନିକଟେ
ଉତ୍ତରତୋ ମାଗଧାଃ ତ୍ୱଦୁଭୟ
ମଧ୍ୟବର୍ତୀ ତ୍ୱାଦୁଡ୍ର ମାଗଧା,
ଅତ ଏବୋଡ୍ରକଳିଙ୍ଗାନା
ମୁଭୟୋପଜୀ ବିତ୍ୱାଭିପ୍ରାୟେଣ
ବୃତ୍ତିଦ୍ୱୟମଧ୍ୟେ ଗଣନମ୍ ।୨୮

ଏଠାରେ ଲକ୍ଷ୍ୟ କରାଯାଏ ଯେ ଉଡ୍ର ଓ କଳିଙ୍ଗରେ ପ୍ରଚଳନ ଥିବା କାରଣରୁ ଉଡ୍ରମାଗଧୀ ପ୍ରବୃତ୍ତିରେ ଦୁଇଟି ବୃତ୍ତିକୁ ସଂଶ୍ଳିଷ୍ଟ କରାଯାଇଛି । ଏ କ୍ଷେତ୍ରରେ ମଗଧରେ ପ୍ରଚଳିତ ବୃତ୍ତିକୁ ଗୁରୁତ୍ୱ ଦିଆଯାଇ ନାହିଁ ।

**'ନାଟ୍ୟଶାସ୍ତ୍ର' କାଳୀନ ଉଡ୍ରବିଭାଷା ହିଁ ଆଜିକାଲିର ଓଡ଼ିଆ ଭାଷା**

ଯଦି ପ୍ରଶ୍ନ ଉଠେ ଯେ, ଆଜିକାଲିର ଓଡ଼ିଆଭାଷା ପ୍ରାଚୀନ ଉଡ୍ରବିଭାଷା କି ? ଏହାର ଉତ୍ତର ସମସ୍ତଙ୍କୁ ଜଣା । ପ୍ରାଚୀନ ଉଡ଼ ବା ଓଡ଼କୁ ସଂସ୍କୃତରେ ଉଡ୍ର ବା ଓଡ୍ର କୁହାଯାଉଥିଲା । ଉଡ଼ ବା ଓଡ଼ ଭାଷା କହୁଥିବା ଲୋକଙ୍କୁ ଉଡ଼ିଆ ବା ଓଡ଼ିଆ କୁହାଯାଉଥିଲା ଏବଂ ଅଧୁନା କୁହାଯାଉଛି । କେବଳ ଉଡ୍ର ନୁହେଁ, କଳିଙ୍ଗ, ତୋଷଳ, ଉତ୍କଳ, କଙ୍ଗୋଦ, ଦକ୍ଷିଣକୋଶଳ, ଇତ୍ୟାଦି ରାଜ୍ୟମାନଙ୍କରେ ଉଡ୍ର ଭାଷାର ପ୍ରଚଳନ ଥିବାରୁ ଏହି ସମସ୍ତ ରାଜ୍ୟବାସୀଙ୍କୁ ଓଡ଼ିଆ ବୋଲି କୁହାଯାଉଥିଲା । ବର୍ତ୍ତମାନର ଓଡ଼ିଶାର ଠିକ୍ ପୂର୍ବବର୍ତ୍ତୀ ନାମ ଉତ୍କଳ ଥିଲା । ତେଣୁ ଅନେକ

ବର୍ଷଧରି ଉଡ୍ରଭାଷାକୁ ଉତ୍କଳୀ ଭାଷା ବୋଲି କୁହାଯାଉଥିଲା । କିନ୍ତୁ ଏହି ଭାଷାର ' ଉତ୍କଳୀ' ନାମଠାରୁ 'ଉଡ୍ର' ନାମଟି ପ୍ରାଚୀନତର ଅଟେ । କାରଣ 'ନାଟ୍ୟଶାସ୍ତ୍ର'ରେ ଉଡ୍ର ନାମଟି ଅଛି ଓ ଏହାକୁ ଉତ୍କଳୀ ବା ଉତ୍କଳିକା କୁହାଯାଉଥିଲା ବୋଲି 'ନାଟ୍ୟଶାସ୍ତ୍ର'ପରେ ରଚିତ ବା ଅତିକମ୍‌ରେ ପଞ୍ଚଦଶ ଶତାବ୍ଦୀ ପୂର୍ବରୁ ରଚିତ ଶୁଭଙ୍କରଙ୍କ 'ସଙ୍ଗୀତଦାମୋଦର'ରୁ ଆମେ ଜାଣିବାକୁ ପାଉ । 'ସଂଗୀତଦାମୋଦର'ରେ ବର୍ଣ୍ଣିତ ବିଭାଷାଗୁଡ଼ିକର ନାମ ହେଲା ଆଭୀରିକା, ଶବରୀକା, ଖଶିକା, ଶକାରୀ, ଚାଣ୍ଡାଳିକା, ଉତ୍କଳିକା ଓ ଦ୍ରାବିଡ଼ୀ । ଏହିସବୁ ବିଭାଷାର ନାମ 'ନାଟ୍ୟଶାସ୍ତ୍ର'ରେ ମଧ୍ୟ ଉଲ୍ଲେଖ ଅଛି ।

ଅଭାରିକା ଶବରିକା ଖଶିକା ଶକାରୀ
ଚଣ୍ଡାଳିକା ତଦନୁଚୋତ୍କଳିକାଭିଧାନା ।
ସାଦ୍ରାବିଡ଼ୀ ଚ କଥିତା କୃତିଭିର୍ବିଭାଷା
ପୈଶାଚିକେ ସ୍ୱରସମାସ.........ଯୋଗାତ୍ ।।୨୯

ଉତ୍କଳିକା ବିଭାଷାର ଲକ୍ଷଣ ବର୍ଣ୍ଣନା କରିବାକୁ ଯାଇ ଶୁଭଙ୍କର କହିଛନ୍ତି ଯେ, ଯେଉଁ ଭାଷାରେ 'ଅଟେ' ପଦ ବାରମ୍ବାର ବୋଲାଯାଏ ଓ ଯେଉଁଥିରେ ରୋଷଯୁକ୍ତ ରଚନାମୟୀ ବାଣୀ ଥାଏ, ତାହା ଉଡ୍ରଦେଶରେ (ଓଡ଼ିଶାରେ ) ଉତ୍କଳୀଭାଷା ନାମରେ ଖ୍ୟାତ । ନାଟ୍ୟରେ ଏହାକୁ (ଉଡ୍ରକୁ) ଉତ୍କଳିକା କହିବା ଉଚିତ୍ ।

ଅଟେପଦଂ ଯତ୍ର ଚକାସ୍ତି ଭୂୟଃ
ସରୋଷନିର୍ମାଣବତୀବ ବାଣୀ ।
ଭାଷୋତ୍କଳୀ ସା କଥିତୋଡ୍ରଦେଶେ
ନାଟ୍ୟେ ନିଗଦ୍ୟା ଭବେଉଥେୟମ୍ ।।୩୦

ଗଙ୍ଗାନଦୀ ଏବଂ ସମୁଦ୍ର ମଧ୍ୟରେ ଅବସ୍ଥିତ ଦେଶରେ 'ଏ' କାର ବହୁଳ ଭାଷା ବ୍ୟବହାର ହୁଏ ବୋଲି 'ନାଟ୍ୟଶାସ୍ତ୍ର'ରେ ଉଲ୍ଲେଖ ଅଛି ।

ଗଙ୍ଗାସାଗର ମଧ୍ୟେ ତୁ ଯେ
ଦେଶାଃ ସଂପ୍ରକୀର୍ତିର୍ତାଃ ।
ଏକାରବହୁଳାଂ ତେଷୁ ଭାଷାଂ
ତଜ୍ଞାଃ ପ୍ରଯୋଜୟେତ୍ ।।୩୧

ଅଭିନବଗୁପ୍ତ ଏହି ପଦେଶକୁ ପୂର୍ବଦେଶ ବୋଲି କହିଛନ୍ତି ।

ଗଙ୍ଗାସାଗର ମଧ୍ୟ ଇତି ପୂର୍ବଦେଶ ଉପଲକ୍ଷିତଃ ।।୩୨

ପୁଣି 'ନାଟ୍ୟଶାସ୍ତ୍ର'ରେ ମଧ୍ୟ ଉଲ୍ଲେଖ ଅଛି ଯେ, ସୁଡ଼ଙ୍ଗ, ଆଦି ଖନନକାରୀ, ବନ୍ଦୀଶାଳାର ପ୍ରହରୀ, ଘୋଡ଼ାସାଇସମାନଙ୍କର ସମ୍ବାଦର ଭାଷା ଓଡ୍ରୀ (ଉଡ୍ର) ହେବା ଉଚିତ୍, କିନ୍ତୁ ସେହିଭଳି ପାତ୍ରମାନେ ଆପଦଗ୍ରସ୍ତ କାଳରେ ନିଜର ଆତ୍ମରକ୍ଷା ପାଇଁ ମାଗଧୀ କହନ୍ତି, ଅର୍ଥାତ୍ ମାଗଧୀ କହିଲେ ଓଡ଼ିଆ ବୋଲି ଧରାପଡ଼ିବେ ନାହିଁ ।

Odri is to be assigned to diggers of subterranearn passages, prison warders, horsemen. Heroes and others like them while in difficulty are also to use Magadhi as a means to protect themselves. 33

ତେଣୁ ଉଡ୍ରବିଭାଷା ବା ଉଡ୍ରଭାଷାକୁ କିଏ କେଉଁ କାଳରେ ଉତ୍କଳୀ କୁହନ୍ତୁ ବା ଉତ୍କଳିକା କୁହନ୍ତୁ ବା କଳିଙ୍ଗ କୁହନ୍ତୁ, ବର୍ତ୍ତମାନ ତାହାର ନାମ ଉଡ଼ ବା ଓଡ଼ ବା ଉଡ଼ିଆ ବା ଓଡ଼ିଆ ରହିଛି । ଉତ୍କଳର ନାମ ଓଡ଼ିଶା ହୋଇଛି । ଓଡ଼ ଭାଷା କହୁଥିବା ଲୋକଙ୍କୁ ଓଡ଼ିଆ କୁହାଯାଉଛି । ବର୍ତ୍ତମାନର ଓଡ଼ିଶା ଭାଷା ଭିତ୍ତିରେ ୧.୦୪.୧୯୩୬ରେ ଏକ ସ୍ୱତନ୍ତ୍ର ପ୍ରଦେଶ ହେଲା । ଏହାର ଅର୍ଥ ନୁହେଁ ଯେ, ୧୯୩୬ ଖ୍ରୀଷ୍ଟାବ୍ଦ ପୂର୍ବରୁ ଓଡ଼ିଶା ନଥିଲା କି ଓଡ଼ିଆ ଭାଷା ନଥିଲା । ସବୁଠାରୁ ଆନନ୍ଦର କଥା ହେଲା, ବର୍ତ୍ତମାନର ଓଡ଼ିଶା ନାମଟି ସେହି ଓଡ଼ିଆ ଭାଷାର ଆଦର୍ଶରେ ନାମିତ ହୋଇଛି ।

**ଉଡ୍ରପ୍ରାକୃତ**

'ନାଟ୍ୟଶାସ୍ତ୍ର'ରେ ବର୍ଣ୍ଣିତ ଅର୍ଦ୍ଧମାଗଧୀ ବା ଉଡ୍ରମାଗଧୀ ହେଉଛି ଉଡ୍ରବିଭାଷାର ମାଗଧୀ ପ୍ରଭାବିତ ପ୍ରାକୃତ ରୂପାନ୍ତର । କିନ୍ତୁ ଅର୍ଦ୍ଧମାଗଧୀରେ 'ଅଟେ' ପଦ ପ୍ରୟୋଗ ହୁଏ ନାହିଁ, ଯାହା ଅଦ୍ୟାବଧି ଓଡ଼ିଆରେ ବହୁଳ ଭାବରେ ପ୍ରୟୋଗ ହେଉଛି । ଅର୍ଦ୍ଧମାଗଧୀ ଆଉ ଆଜିକାଲିର କଥିତ ଭାଷା ହୋଇ ରହିନାହିଁ, କିନ୍ତୁ ଓଡ଼ିଆ ଅଛି । ଉଡ୍ର ବା ଓଡ଼ିଆରେ ସଂସ୍କୃତ ଭାଷାର ପ୍ରଭାବିସ୍ତାର ହେଲାପରେ ଉଡ୍ରବିଭାଷାକୁ ହିଁ (ଅର୍ଦ୍ଧମାଗଧୀ ନୁହେଁ) ଉଡ୍ରପ୍ରାକୃତ ବୋଲି କୁହାଯାଇଛି । ଷୋଡ଼ଶ ଶତାବ୍ଦୀରେ ଜଗନ୍ନାଥ ଦାସ 'ଓଡ଼ିଆ ଭାଗବତ'ରେ ଲେଖିଛନ୍ତି,

"ପ୍ରାକୃତ ବନ୍ଧେ ଗୀତବାଣୀ ।
ଶୁଣି ସଂସାରୁ ତର ପ୍ରାଣୀ" ।। ୩୪

ତେଣୁ ସେତେବେଳକୁ ଆଧୁନିକ ଓଡ଼ିଆ ଭାଷାକୁ ପ୍ରାକୃତ ବୋଲି କହିଲେଣି । 'ନାଟ୍ୟଶାସ୍ତ୍ର'ରେ ଅର୍ଦ୍ଧମାଗଧୀ ପ୍ରାକୃତର ଉଲ୍ଲେଖ ଅଛି, ପାଲି ଭାଷାର ନାମଟି ନାହିଁ, କିନ୍ତୁ ମାଗଧୀ ଭାଷାଟି

ଅଛି । ପାଲି ଓ ଅର୍ଦ୍ଧମାଗଧୀରେ ଅନେକ ଓଡ଼ିଆ ଶବ୍ଦ ଅଛି ।୩୫ ପାଲି ଓ ଅର୍ଦ୍ଧମାଗଧୀର ଦେଶଜ ଶବ୍ଦ ହେଲା ଉଡ୍ରବିଭାଷା ।

ଅର୍ଦ୍ଧମାଗଧୀ ହେଲା ଜୈନପ୍ରାକୃତ ଓ ପାଲି ହେଲା ବୌଦ୍ଧପ୍ରାକୃତ । ଆଧୁନିକ ଓଡ଼ିଆ ହେଲା ଉଡ୍ରପ୍ରାକୃତ । ପ୍ରାକୃତ ହେଉଛି ସଂସ୍କୃତ ପ୍ରଭାବିତ ଚଳିତ ଭାଷା, ମଣିଷ ପ୍ରକୃତିରୁ ଜାତ ଭାଷା, ସାଧାରଣ ଲୋକଭାଷା, ଗୋଟିଏ ଗୋଷ୍ଠୀର ଭାଷା ବା ଗୋଟିଏ ଅଞ୍ଚଳର ଭାଷା । ସଂସ୍କୃତ ହେଲା ଭାରତର ପ୍ରତ୍ୟେକ ଅଞ୍ଚଳରେ ବ୍ୟାପ୍ତ ଭାଷା । 'ନାଟ୍ୟଶାସ୍ତ୍ର' ରଚନା ବେଳକୁ ଯେଉଁ ପ୍ରମୁଖ ଭାଷାଗୁଡ଼ିକ ସଂସ୍କୃତଦ୍ୱାରା ପ୍ରଭାବିତ ନ ହୋଇ ପ୍ରାକୃତ ରୂପ ନେଇନଥିଲା, ସେଗୁଡ଼ିକ ବିଭାଷା ନାମରେ ଖ୍ୟାତ ଥିଲା । ସଂସ୍କୃତ ପରେ ପ୍ରାକୃତ ଭାଷାର ସୃଷ୍ଟି, କିନ୍ତୁ ସଂସ୍କୃତ ପୂର୍ବରୁ ଭାରତରେ କ'ଣ ଭାଷା ନଥିଲା ? ଯେଉଁ ପ୍ରାଚୀନ ଭାଷାଗୁଡ଼ିକ ଥିଲା, ତନ୍ମଧ୍ୟରୁ ପ୍ରସିଦ୍ଧ ଓ ନିୟତ ଭାଷାଗୁଡ଼ିକୁ ଭରତମୁନି, 'ନାଟ୍ୟଶାସ୍ତ୍ର'ରେ ବିଭାଷା ନାମରେ ଜାତିଭାଷା ଭାବରେ ବର୍ଗୀକରଣ କରିଛନ୍ତି । ପ୍ରାକୃତ ଭାଷାର ତତ୍‌ସମ ଓ ତଦ୍ଭବ ଶବ୍ଦଗୁଡ଼ିକ ସଂସ୍କୃତରୁ, ଯଥାକ୍ରମେ, ଅବିକଳ ରୂପେ ବା ବିଭ୍ରଷ୍ଟ ରୂପେ ଆହରିତ ହୋଇଛି । ଦେଶଜ ଶବ୍ଦଗୁଡ଼ିକ ବିଭାଷା କିମ୍ବା ନିଜର ଦେଶଭାଷାରୁ ଆହରିତ ହୋଇଛି । ଅବଶ୍ୟ ସଂସ୍କୃତ ଭାଷାରେ ବିଭାଷା କିମ୍ବା ଅନ୍ୟାନ୍ୟ ପ୍ରାଚୀନ ଦେଶଭାଷାର ଶବ୍ଦ ମିଶିଲେ ତାହା ସଂସ୍କୃତ ହୋଇଯାଏ, ତଦ୍ଭବ କିମ୍ବା ଦେଶଜ ଭାବରେ ବର୍ଗୀକୃତ ହୁଏନାହିଁ । ବର୍ତ୍ତମାନର ଓଡ଼ିଆ ଭାଷାକୁ ଉଡ୍ରପ୍ରାକୃତ ବୋଲି କୁହାଯାଉଛି । ଏହାର କାରଣ ହେଲା ଆଜିକାଲିର ଓଡ଼ିଆ ଭାଷାରେ ତତ୍‌ସମ, ତଦ୍ଭବ, ଦେଶଜ ଓ ଯାବନିକ ଶବ୍ଦର ପ୍ରୟୋଗ ହେଉଛି । ପ୍ରାଚୀନ ଉଡ୍ରବିଭାଷା ଓ ଆଜିକାଲିର ଓଡ଼ିଆଭାଷା ମଧ୍ୟରେ ମୁଖ୍ୟ ପ୍ରଭେଦ ହେଲା, ଆଜିକାଲିର ଓଡ଼ିଆରେ ସଂସ୍କୃତ ଓ ବୈଦେଶିକ ଭାଷାର ପ୍ରଭାବ ପଡ଼ିଛି, ଯାହା ଉଡ୍ରବିଭାଷାରେ ନଥିଲା । ବର୍ତ୍ତମାନ ଓଡ଼ିଆ ଭାଷାରେ ଯେଉଁ ଦେଶଜ ଶବ୍ଦର ପ୍ରଚଳନ ଅଛି, ସେଗୁଡ଼ିକ ଉଡ୍ରବିଭାଷାରୁ ଆସିଛି । ଅର୍ଦ୍ଧମାଗଧୀପ୍ରାକୃତ ଓ ପାଲିପ୍ରାକୃତଠାରୁ ଆଜିକାଲିର ଓଡ଼ିଆ ବା ଉଡ୍ରପ୍ରାକୃତର ଭିନ୍ନତା ରହିବାର କାରଣ ହେଲା, ପ୍ରାଚୀନ ଉଡ୍ରବିଭାଷାର ବୈଶିଷ୍ଟ୍ୟ ଓ ସ୍ୱରଗତ ବିଧି ଓ ସ୍ୱରାଶ୍ରିତ ଶବ୍ଦ ବର୍ତ୍ତମାନର ଓଡ଼ିଆଭାଷାରେ ଅବିକୃତ ରହି, ଉଡ୍ରବିଭାଷାର ମୌଳିକାତକୁ ଅକ୍ଷୁଣ୍ଣ ରଖିଛି, ପୁଣି ସାଧୁ, ଶାସ୍ତ୍ରୀୟ, କଥିତ, ଲିଖିତ, ପଠିତ, ବ୍ୟାକରଣବଦ୍ଧ, ସାହିତ୍ୟିକ ଓ ଗୀତିମୟ ଭାଷା ରୂପେ ଅବିଚ୍ଛିନ୍ନ ଭାବରେ କ୍ରମବର୍ଦ୍ଧମାନ ଅଛି । କିନ୍ତୁ ଉଡ୍ରବିଭାଷାରୁ ବିକଶିତ ଅର୍ଦ୍ଧମାଗଧୀ ଓ ପାଲି ପ୍ରାକୃତ ଯଥାକ୍ରମେ ଜୈନ ଓ ବୌଦ୍ଧମାନଙ୍କଦ୍ୱାରା ସାରା ଭାରତରେ ପ୍ରାସାରିତ ହୋଇ ଉଡ୍ରବିଭାଷାର ମୌଳିକତାକୁ ହରାଇ ନିଜେ ଗୋଟିଏ ସମୟରେ ଗୋଟିଏ ଗୋଟିଏ ପ୍ରମୁଖ ଭାଷାରେ ପରିଣତ ହୋଇଥିଲେ ମଧ୍ୟ ଅଧୁନା କୌଣସି ଅଞ୍ଚଳର କଥିତ ଭାଷା ନୁହେଁ କି କ୍ରମବର୍ଦ୍ଧମାନ ନୁହେଁ ।

ଉଡ୍ରବିଭାଷାର ମୌଳିକତା

'ବିଭାଷା'ର ଶାବ୍ଦିକ ଅର୍ଥ କେବଳ ବିକଳ୍ପ, ଅଶ୍ଳୀଳ ଭାଷା କିମ୍ବା ଗାଳମନ୍ଦ ନୁହେଁ, ଏକ ଅପଭ୍ରଷ୍ଟ ଭାଷା ବା ପ୍ରାକୃତ ଭାଷା ମଧ୍ୟ । କିନ୍ତୁ ଦୁଃଖର ବିଷୟ ଅଧିକାଂଶ ଲୋକ ଏହାକୁ ଅପଭ୍ରଷ୍ଟ ଭାଷା ବୋଲି ବୁଝନ୍ତି, ଯଦିଓ ବିଭାଷା କହିଲେ ପ୍ରାକୃତ ଭାଷା କିମ୍ବା ସଂସ୍କୃତର ସମକକ୍ଷ କିମ୍ବା ସଂସ୍କୃତର ସମକକ୍ଷ ଦେଶଭାଷା ବୋଲି ବୁଝିବା ଆବଶ୍ୟକ । କାରଣ ବିଭାଷା ହେଲା ଏକ ବି-ଭାଷା । 'ବି' ଅର୍ଥ କେବଳ ବିହୀନ, ବିକୃତ, ଅଭାବ, ନିର୍ଣ୍ଣିତ, ବିଭିନ୍ନ, ନିଷିଦ୍ଧ ବା ବିଗତ ନୁହେଁ, ସମ୍ପୂର୍ଣ୍ଣ ରୂପେ ବା ବିଶିଷ୍ଟ ମଧ୍ୟ । ଯଦି ବିଭାଷା ଏକ ଅଭାବୀ, ବିକୃତ, ବିଗତ, କିମ୍ବା, ନିଷିଦ୍ଧ ଭାଷା ହୋଇଥାଆନ୍ତା, ତେବେ ସେଗୁଡ଼ିକୁ ଭରତମୁନି 'ନାଟ୍ୟଶାସ୍ତ୍ର'ରେ ସ୍ଥାନ ଦେଇ ନଥାନ୍ତେ । ଯେଉଁ ବିଭାଷାଗୁଡ଼ିକ ନାଟ୍ୟରେ ପ୍ରୟୋଗ ହେଉଥିଲା, ସେଗୁଡ଼ିକ ସ୍ୱୟଂସମ୍ପୂର୍ଣ୍ଣ ବିଶିଷ୍ଟ ଦେଶଭାଷା ଅଟେ । ବିଭାଷାର କଦର୍ଥକରି ଏହାକୁ ଅସାଧୁ ଭାଷା, ନୀଚଭାଷା, କୁଭାଷା, ଅପଭାଷା ବା ଇତରଜନଙ୍କ କଥିତ ଭାଷା ବୋଲି ମଣିବା ଠିକ୍ ନୁହେଁ । କିଏ କେଉଁ ଭାବ ବା ଅର୍ଥରେ କେଉଁ ଶବ୍ଦ ପ୍ରୟୋଗ କରନ୍ତି, ତାହାକୁ ବୁଝିବା ଆବଶ୍ୟକ । ଯେମିତି 'ଅସୁର' ଶବ୍ଦର ଦୁଇଟି ଅର୍ଥ ଅଛି, ଯଥା-ଦୈତ୍ୟ ଓ ଦେବତା । ଯଦି ଜଣେ ଅସୁର ଶବ୍ଦକୁ ଦେବତା ଅର୍ଥରେ ପ୍ରୟୋଗ କରିଥାଆନ୍ତି ଏବଂ ଆମେ ତାହାକୁ ଦୈତ୍ୟ ଅର୍ଥରେ ବୁଝନ୍ତି, ତେବେ ଅର୍ଥର ଅନର୍ଥ କରନ୍ତି । ସେହିପରି ଅନେକ ଲୋକ 'ଅପଭ୍ରଂଶ' ଅର୍ଥକୁ ଅବନତି, କୁତ୍ସିତଭାଷା, ସାଧୁଭାଷାର ଅଶୁଦ୍ଧ ରୂପାନ୍ତର ବା ଇତରଜନଙ୍କ କଥିତ ଭାଷା ବୋଲି ବୁଝନ୍ତି । କିନ୍ତୁ ତାହା ହେଲା ଅପଭ୍ରଷ୍ଟଭାଷା, ଯାହା ମୂଳ ଭାଷାରୁ ଆଗତ ବା ରୂପାନ୍ତରପ୍ରାପ୍ତ ଉଡ୍ରଭାଷା ଅଟେ । ଯଦି ଅପଭ୍ରଂଶ ଭାଷାକୁ ସାଧୁଭାଷାର ଅଶୁଦ୍ଧ ରୂପାନ୍ତର ବୋଲି ବୁଝିବା ତେବେ ତାହା ଏକ ନୂତନ ଭାଷା ହେଲା କିପରି ? ଅବଶ୍ୟ ତାହା ଏକ ଭାଷାର ଶୁଦ୍ଧ ରୂପାନ୍ତର ହୋଇପାରେ ।

ଅଭିନବ ଗୁପ୍ତଙ୍କ ମତରେ ବିଭାଷା ହେଉଛି କୌଣସି ଭାଷାର ଅପଭ୍ରଷ୍ଟ ଭାଷା ଏବଂ ଏହା ବଣ, ଜଙ୍ଗଲ, ଗୁମ୍ଫା, ଗ୍ରାମ,

ପୁରପଲ୍ଲୀରେ ବାସ କରୁଥିବା ସର୍ବସାଧାରଣଙ୍କ ଭାଷା ଅଟେ । ତାଙ୍କ ମତରେ ଦେଶଭାଷା ବା ଭାଷା ହେଉଛି ସଂସ୍କୃତର ଅପଭ୍ରଂଶ ଭାଷା (ପ୍ରାକୃତ) ଓ ବିଭାଷା ହେଉଛି ଭାଷାର (ପ୍ରାକୃତର) ଅପଭ୍ରଂଶ ଭାଷା ।

ଦେଶଭାଷାଂ ସଂକ୍ଷିପ୍ୟାହ ମାଗଧୀତ୍ୟାଦି ।
ଭାଷା ସଂସ୍କୃତାପଭ୍ରଂଶଃ ।

ଭାଷାପଭ୍ରଂଶସ୍ତୁ ବିଭାଷା ସା ତତ୍ତଦେଶ ଏବ
ଗହ୍ୱରବାସିନାଂ ଚ, ଏତା ଏବ ନାଟ୍ୟେ ତୁ । ୩୬

'ନାଟ୍ୟଶାସ୍ତ୍ର'ରେ ଯେଉଁ ବିଭାଷାଗୁଡିକର ବର୍ଣ୍ଣନା ଅଛି, ସେଗୁଡ଼ିକ ମୌଳିକ ଭାଷା ଅଟେ, ଯଥା : ଉଡ୍ର, ଶବର, ଆଭୀର ଚାଣ୍ଡାଳୀ, ଦ୍ରାବିଡ଼, ବନଚାରୀ, ଇତ୍ୟାଦି । ଯଦି ସଂସ୍କୃତର ଅପଭ୍ରଂଶ କାରଣରୁ ଗୋଟିଏ ପ୍ରାକୃତ ଭାଷା ସୃଷ୍ଟିହୁଏ, ସେହି ପ୍ରାକୃତ ଭାଷାଟି ଏକ ମୌଳିକ ଭାଷା ହେବନାହିଁ । ଯଦି ଏକ ବିଭାଷା ସଂସ୍କୃତ ପ୍ରଭାବରେ ପ୍ରାକୃତ ଭାଷାରେ ପରିଣତ ହୁଏ ଓ ନିଜେ ମଧ୍ୟ ବଞ୍ଚିରହେ, ତେବେ ତାହା ମୌଳିକତା ହରାଇବା ନାହିଁ । ଭାରତୀୟ ଭାଷା ପରମ୍ପରାରେ ବିଭାଷାଗୁଡ଼ିକ ସର୍ବପୁରାତନ, ତାପରେ ସଂସ୍କୃତ ଓ ତାପରେ ପ୍ରାକୃତ । ହୁଏତ ସମସ୍ତ ବିଭାଷା ଶାସ୍ତ୍ରୀୟ ନହୋଇପାରେ । ଓଡ଼ିଆଭାଷା ସଂସ୍କୃତ ବା ଅନ୍ୟକୌଣସି ଭାଷାରୁ ସୃଷ୍ଟି ହୋଇନାହିଁ । ଏହା ଏକ କୃଷୀଜୀବୀ ଉଡ଼ ବା ଓଡ଼ଚାଷୀମାନଙ୍କ ମୌଳିକ ଭାଷା ଅଟେ । ଅନେକ ଓଡ଼ିଆ ଶବ୍ଦ ଅଛି, ଯାହା ସଂସ୍କୃତ ଶବ୍ଦ ସହିତ ସମାନ ଅଟେ । ଏହାର କାରଣ ଏହି ପ୍ରକାର ଶବ୍ଦଗୁଡ଼ିକ ସଂସ୍କୃତରୁ ଓଡ଼ିଆକୁ ଆସିଛି କିମ୍ବା ଓଡ଼ିଆରୁ ସଂସ୍କୃତକୁ ଯାଇଥାଇପାରେ । ଉଡ୍ର ବା ଉଡ଼ଭାଷା ପରେ ଅର୍ଦ୍ଧମାଗଧୀ ଓ ପାଲିର ବିକାଶ ଘଟିଛି । ଉଡ୍ରବିଭାଷାରେ ସଂସ୍କୃତର ପ୍ରଭାବ ପଡ଼ିବା ପୂର୍ବରୁ ମୁଣ୍ଡା, ଶାବରୀ, ଦ୍ରାବିଡ଼ୀ ଭାଷାର ପ୍ରଭାବ ପଡ଼ିଥାଇପାରେ । ତଥାପି 'ନାଟ୍ୟଶାସ୍ତ୍ର' ରଚନା ବେଳକୁ ଶାବରୀ, ଦ୍ରାବିଡ଼ୀ ଓ ଉଡ୍ର ଗୋଟିଏ ସ୍ୱତନ୍ତ୍ର ଭାଷା ଥିଲା, ଅର୍ଥାତ୍ ମୌଳିକ ଭାଷା ଥିଲା । ଓଡ଼ିଆ ଭାଷାର ବର୍ଣ୍ଣମାଳା ପାଣିନିଙ୍କ ବ୍ୟାକରଣ କିମ୍ବା'ନାଟ୍ୟଶାସ୍ତ୍ର' ବର୍ଣ୍ଣିତ ବର୍ଣ୍ଣମାଳା ଅନୁସୃତ ନୁହେଁ । L.S.S.O Malleyଙ୍କର ଉକ୍ତିକୁ ଉଦ୍ଧାର କରି ଉକ୍ତ ଲେଖକ ତାଙ୍କର 'ଓଡ଼ିଆଭାଷାର ଶାସ୍ତ୍ରୀୟତା' ପୁସ୍ତକରେ ଲେଖିଛନ୍ତି ଯେ, ତତ୍କାଳୀନ ଉଡ୍ରୀ ବା ଉତ୍କଳୀ (ବର୍ତ୍ତମାନର ଓଡ଼ିଆ) ଭାଷା ପାଣିନିଙ୍କ ପୂର୍ବରୁ ବ୍ୟାକରଣବଦ୍ଧ ହୋଇସାରିଥିଲା । ୩୭

ଅତିପ୍ରାଚୀନ ଉଡ୍ର ରଚିତ କୌଣସି ସାହିତ୍ୟ ଏହି ଲେଖକର ଦୃଷ୍ଟିଗୋଚର ହୋଇନଥିଲେ ମଧ୍ୟ ଉଡ୍ରବିଭାଷା ଯେ ଏକ ମୌଳିକ ଭାଷା ଏଥିରେ ତିଳେ ହେଲେ ସନ୍ଦେହ ନାହିଁ । କାରଣ ଏହା ମୂଳରୁ ସଂସ୍କୃତ କିମ୍ବା ପ୍ରାକୃତଦ୍ୱାରା ପ୍ରଭାବିତ ନୁହେଁ ବୋଲି ଭରତମୁନି ଏହାକୁ 'ନାଟ୍ୟଶାସ୍ତ୍ର'ରେ ସ୍ୱତନ୍ତ୍ର ବିଭାଷା ବର୍ଗରେ ଅନ୍ତର୍ଭୁକ୍ତ ରଖିଛନ୍ତି । ସେତେବେଳ ବିଭାଷାଗୁଡ଼ିକ ଭାରତର ଶିକ୍ଷିତ-ଅଶିକ୍ଷିତ ସର୍ବସାଧାରଣଙ୍କ ବ୍ୟବହୃତ ଭାଷା ଥିଲା । ପୁଣି ସର୍ବସାଧାରଣଙ୍କ ବ୍ୟବହୃତ ଭାଷା ମଧ୍ୟରୁ ମହତ୍ତ୍ୱପୂର୍ଣ୍ଣ ଭାଷାଗୁଡ଼ିକୁ 'ନାଟ୍ୟଶାସ୍ତ୍ର'ରେ ଉଦାହରଣ ଦୃଷ୍ଟିରୁ ବର୍ଣ୍ଣନା କରାଯାଇଛି, ଯଦିଓ ସେତେବେଳକୁ ଅନ୍ୟାନ୍ୟ ଭାଷା ମଧ୍ୟ ଭାରତରେ ପ୍ରଚଳନ ନଥିଲା । ମୌଳିକ ଭାଷା କହିଲେ ଅତିକମ୍‌ରେ ଆମେ ଏତିକି ବୁଝିବା ଆବଶ୍ୟକ ଯେ, ଏହା କୌଣସି ଭାଷାରୁ ସୃଷ୍ଟି ହୋଇନାହିଁ । ଏହା ଏକ ଜାତି ବା ଗୋଷ୍ଠୀଦ୍ୱାରା ସ୍ୱତଃ ପ୍ରବୃତ୍ତ ଭାବରେ ଆବହମାନ କାଳରୁ କଥିତ ହୋଇ ବିନ୍ଦୁରୁ ସିନ୍ଧୁ ସୃଷ୍ଟି ହେଲାପରି ବ୍ୟାପୀ ଯାଇଛି । ମୂଳ ଉଡ୍ରବିଭାଷା ପରବର୍ତ୍ତୀ କାଳରେ ଉଡ୍ରମାଗଧୀ ବା ଅର୍ଦ୍ଧମାଗଧୀ ପ୍ରାକୃତ ଭାଷାରେ ପରିଣତ ହେଲା, ଯାହାକୁ 'ନାଟ୍ୟଶାସ୍ତ୍ର'ରେ ମଧ୍ୟ ଅନ୍ତର୍ଭୁକ୍ତ କରାଯାଇଛି । ପୁଣି ସେହି ଉଡ୍ରବିଭାଷା ବୌଦ୍ଧମାନଙ୍କଦ୍ୱାରା ପାଲି ପ୍ରାକୃତରେ ପରିଣତ ହେଲେ ମଧ୍ୟ'ନାଟ୍ୟଶାସ୍ତ୍ର'ରେ ତାହାର ଉଲ୍ଲେଖ ନାହିଁ । କାରଣ ଅର୍ଦ୍ଧମାଗଧୀ ଓ ପାଲି ପ୍ରାକୃତ ମଧ୍ୟରେ ବ୍ୟାକରଣଗତ ବିଶେଷ ଭିନ୍ନତା ନାହିଁ କିମ୍ବା ନାଟକରେ ପାଲିଭାଷା ପ୍ରାୟ ପ୍ରୟୋଗ ହେଉ ନଥିଲା । ଗୋଟିଏ ଭାଷାରେ ଅନ୍ୟ କୌଣସି ଭାଷାର ଶବ୍ଦ ମିଶିଲେ ତାହା ସମୃଦ୍ଧ ହୁଏ । ଏହାର ଅର୍ଥ ନୁହେଁ ଯେ ପ୍ରଥମ ଭାଷାଟିରେ ଯେଉଁ ଦ୍ୱିତୀୟ ଭାଷାର ଶବ୍ଦ ମିଶିଲା, ତାହା (ପ୍ରଥମ) ସେହି ଦ୍ୱିତୀୟ ଭାଷାରୁ ସୃଷ୍ଟି ହୋଇଛି । ମୌଳିକ ଭାଷା ଅନ୍ୟ ଏକ ଭାଷାର ଉପଭାଷା ହୋଇପାରେ, ଯେମିତି ଅର୍ଦ୍ଧମାଗଧୀର ଉପଭାଷା ଓଡ଼ିଆ ଅଟେ, ଶାଖାଭାଷା ନୁହେଁ । ସେମିତି ଉଡ୍ରଭାଷା ଅର୍ଦ୍ଧମାଗଧୀ ବା ପାଲିର ଶାଖାଭାଷା ନୁହେଁ, ଅର୍ଥାତ୍ ତହିଁରୁ ସୃଷ୍ଟି ହୋଇନାହିଁ । ଏହାର ପ୍ରମାଣ ହେଲା ଯେ, 'ନାଟ୍ୟଶାସ୍ତ୍ର'ରେ ପାଲିଭାଷାର ଚର୍ଚ୍ଚା ହୋଇନାହିଁ । କିନ୍ତୁ ଉଡ୍ରମାଗଧୀ ପ୍ରାକୃତ ଓ ଉଡ୍ରବିଭାଷା ଉଭୟର ଉଲ୍ଲେଖ ଅଛି । ଏହି ଶାସ୍ତ୍ରରେ ବର୍ଣ୍ଣିତ ହୋଇଥିବା ସଂସ୍କୃତ ଏକ ମୌଳିକ ଭାଷା ଓ ବିଭାଷାଗୁଡ଼ିକ ମଧ୍ୟ ମୌଳିକ ଭାଷା ଅଟେ । 'ନାଟ୍ୟଶାସ୍ତ୍ର' ବର୍ଣ୍ଣିତ ପ୍ରାକୃତ ଭାଷାଗଡ଼ିକ ମୌଳିକ କି ନୁହେଁ, ତାହାର ନିର୍ଣ୍ଣୟ କରିବା ପାଇଁ ଆମକୁ ପ୍ରଥମେ ଗୋଟିଏ ଲକ୍ଷଣ ପ୍ରତି ଧ୍ୟାନ ଦେବାକୁ ହେବ । ତାହା ହେଲା, ଯଦି କୌଣସି ଭାଷା ପ୍ରାକୃତର ରୂପ ନେଲାପରେ ତାହାର ସତ୍ତା ହରାଇଲା ବା ଗୁରୁତ୍ୱ କମିଗଲା ବା ସଙ୍କୁଚିତ ହୋଇଗଲା ବା ଅପ୍ରଚଳିତ ହୋଇଗଲା, ସେହି ସ୍ଥଳରେ ତାର ପ୍ରାକୃତ ଭାଷାଟି

ମୌଳିକ ହୋଇପାରେ । ଯଦି ଏହାର ବିପରୀତ ହୁଏ ତେବେ ପ୍ରାକୃତ ନୁହେଁ, ତାର ମୂଳ ଭାଷାଟି ହିଁ ମୌଳିକ ହୁଏ । କାରଣ ମୌଳିକ ଭାଷାଟିଏ ତାର ମୌଳିକତା ସହିତ ଅବିଚ୍ଛିନ୍ନ ଭାବରେ ପ୍ରଚଳନରେ ରହିଥାଏ ଓ ସମୃଦ୍ଧ ହୋଇ ଚାଲିଥାଏ । ଏହା ନିଜକୁ ସମୃଦ୍ଧ କରିବା ପାଇଁ ଅନ୍ୟ ଭାଷାରୁ କିଛି ଆହରଣ କରି ନିଜ ଢ଼ାଞ୍ଚାରେ ଖାପ ଖୁଆଇ ନେଲେ କିଛି ଅସୁବିଧା ନାହିଁ । ଯଦି ଅନ୍ୟ ଭାଷାର ପ୍ରଭାବରେ ନିଜର ମୌଳିକତା ହରାଏ, ତେବେ କାଳକ୍ରମେ ଅପ୍ରଚଳିତ ହୋଇଯାଏ ।

ଯେତେବଳେ କୌଣସି ଭାଷାରେ ସଂସ୍କାର ଅଣାଯାଇ ତାହାକୁ ପ୍ରାକୃତ ଭାଷାରେ ପରିଣତ କରାଯାଏ, ସେତେବେଳେ ସେହି ମୂଳଭାଷାଟିର କିଛି ରୂପାନ୍ତର ଘଟେ । ତେଣୁ ମୂଳ ଭାଷାର ପ୍ରାକୃତ ଭାଷାକୁ ଏକ ମୌଳିକ ଭାଷା ବୋଲି କୁହାଯାଇନପାରେ, କିନ୍ତୁ ମୂଳ ଭାଷାକୁ ମୌଳିକ ବୋଲି କୁହାଯାଏ ।

ଯଦି ଏକ ମୌଳିକ ଭାଷାର ପ୍ରାକୃତ ଭାଷାଟି କଥିତ, ପ୍ରସାରିତ ଓ ଆଦୃତ ହୋଇଗଲା, ତାହା ମୂଳ ମୌଳିକ ଭାଷାକୁ ଅପ୍ରଚଳିତ କରି ଦେଇପାରେ । ଅନ୍ୟ ପକ୍ଷରେ ଯଦି ମୂଳ ମୌଳିକ ଭାଷାରେ ଏପରି କିଛି ଗୁଣ ଥାଏ, ଯେଉଁଥିପାଇଁ ସର୍ବସାଧାରଣ ତାକୁ ତ୍ୟାଗ କରିପାରନ୍ତି ନାହିଁ ଏବଂ ସବୁକାଳରେ ଅବିଚ୍ଛିନ୍ନ ଭାବରେ ତାହାକୁ ପ୍ରୟୋଗ କରନ୍ତି, ସେ ସ୍ଥଳରେ ତାହାର ପ୍ରାକୃତ ଭାଷାଟି ଦୁର୍ବଳ ହୋଇଯାଏ । 'ନାଟ୍ୟଶାସ୍ତ୍ର'ରେ ବର୍ଣ୍ଣିତ ପ୍ରାକୃତ ଭାଷାଗୁଡ଼ିକ ଯଥା : ମାଗଧୀ, ଅବନ୍ତୀ, ପ୍ରାଚ୍ୟା, ଶୌରସେନୀ, ଅର୍ଦ୍ଧମାଗଧୀ, ବାହ୍ଲୀକା, ଦାକ୍ଷିଣାତ୍ୟା ଆଉ ସର୍ବସାଧାରଣଙ୍କ କଥିତ ଭାଷା ହୋଇ ରହିନାହିଁ । କିନ୍ତୁ ସେଗୁଡ଼ିକ ମଧ୍ୟରୁ କେତେକର ମୌଳିକ ଭାଷା ସମୃଦ୍ଧ ହୋଇଚାଲିଛି, ଯଥା : ତାମିଲ୍, କନ୍ନଡ଼, ତେଲୁଗୁ, ମାଲାୟାଲମ୍, ମରାଠୀ, ଗୁଜୁରାଟୀ, ଓଡ଼ିଆ ଇତ୍ୟାଦି । ଉଡ୍ରବିଭାଷା ମଧ୍ୟ ଅର୍ଦ୍ଧମାଗଧୀ ପ୍ରାକୃତରେ ପରିଣତ ହୋଇଥିଲା । ଏହି ଭାଷା କେବଳ ଉଡ୍ରରେ ନୁହେଁ, ଉତ୍କଳ, କଳିଙ୍ଗ, ଦକ୍ଷିଣକୋଶଳ, କଙ୍ଗୋଦ, ତୋଷଳର ମୁଖ୍ୟ ଭାଷା ଥିଲା ଏବଂ ଅଙ୍ଗ, ବଙ୍ଗ, ମଗଧର କିଛି ଅଞ୍ଚଳରେ ପ୍ରୟୋଗ ହେଉଥିଲା । ଏହାର ପ୍ରମାଣ ଆମକୁ 'ନାଟ୍ୟଶାସ୍ତ୍ର'ରୁ ମିଳେ । ଯେଉଁ ରାଜ୍ୟମାନଙ୍କରେ ଉଡ୍ରମାଗଧୀ ପ୍ରବୃତ୍ତିର ପ୍ରଚଳନ ଥିଲା ସେ ଅଞ୍ଚଳମାନଙ୍କରେ ଉଡ୍ର ଭାଷାର ସମ୍ପୂର୍ଣ୍ଣ କିମ୍ବା ଆଂଶିକ ପ୍ରୟୋଗ ଥିଲା କିମ୍ବା ସେ ଅଞ୍ଚଳରେ ସମସ୍ତେ ଉଡ୍ରଭାଷାରେ କଥୋପକଥନ ନକରୁଥିଲେ ମଧ୍ୟ ଅଧିକାଂଶ ଲୋକେ ଉଡ୍ରବିଭାଷା କିଛି ଅଂଶରେ ବୁଝୁଥିଲେ ।

### ଓଡ଼ିଆଭାଷା ସାହିତ୍ୟ, ସଂଗୀତ, ନାଟକ, ଐତିହ୍ୟ

ଆଧୁନିକ ଓଡ଼ିଆ ସାହିତ୍ୟ, ନାଟକ ଓ ଓଡ଼ିଶୀ ସଂଗୀତର ଐତିହ୍ୟ ବିଶ୍ୱବିଦିତ ଅଟେ । କିନ୍ତୁ ଉଡ୍ରବିଭାଷାରେ ରଚିତ କୌଣସି ଗ୍ରନ୍ଥ ଉକ୍ତ ଲେଖକର ଦୃଷ୍ଟିଗୋଚର ହୋଇନାହିଁ । ତଥାପି ଭରତଙ୍କ 'ନାଟ୍ୟଶାସ୍ତ୍ର'ରୁ ବଳିଷ୍ଠ ପ୍ରମାଣ ମିଳେ ଯେ ପ୍ରାଚୀନ ନାଟ୍ୟରେ ଉଡ୍ରବିଭାଷାର ସମ୍ବାଦ ବା ସଂଳାପ, ଉଡ୍ରବିଭାଷା ଆଧାରିତ ପଦାବଳୀ ଗାନ ଓ ଧ୍ରୁବାଗୀତର ପ୍ରୟୋଗ ହେଉଥିଲା । ପୁଣି ଉଡ୍ରବିଭାଷା ଆଧାରିତ ଗୀତି ଓ ବିଭାଷା ରାଗର ପ୍ରଚଳନ ଥିଲା । ଏଡା ଉଡ୍ରବିଭାଷାର ସାହିତ୍ୟ, ସଂଗୀତ ଓ ଐତିହ୍ୟକୁ ଇଙ୍ଗିତ କରେ । ସେତେବେଳର ବିଭାଷାର ସାହିତ୍ୟ, ସଂଗୀତ ଓ ନାଟ୍ୟ ପରମ୍ପରା ଏବେ ମଧ୍ୟ ଓଡ଼ିଆ ଭାଷାରେ ପ୍ରତିଫଳିତ ହୁଏ ବୋଲି 'ନାଟ୍ୟଶାସ୍ତ୍ର'ରେ ବର୍ଣ୍ଣିତ ପଦଗୀତି, ଧ୍ରୁବାଗାନରୁ ପ୍ରମାଣ ମିଳେ । ପୁଣି ଭରତମୁନିଙ୍କ ସମକାଳୀନ କିମ୍ବା ପୂର୍ବକାଳୀନ ଯଷ୍ଟିକ, କାଶ୍ୟପ ଓ ଶାର୍ଦ୍ଦୁଳ ପ୍ରଭୃତି ମୁନିମାନେ ବିଭାଷା ରାଗର ଚର୍ଚ୍ଚା କରିଛନ୍ତି ।

### ପଦଗୀତିରେ ଅର୍ଦ୍ଧମାଗଧୀ ସ ଉଡ୍ରବିଭାଷା

ଓଡ଼ିଆଭାଷାର ପ୍ରାଚୀନତା ଓ ଶାସ୍ତ୍ରୀୟତା 'ନାଟ୍ୟଶାସ୍ତ୍ର' ବର୍ଣ୍ଣିତ ପଦଗୀତିରୁ ପ୍ରତିଷ୍ଠିତ ହୁଏ । 'ନାଟ୍ୟଶାସ୍ତ୍ର' ରଚନା ହେବା ବେଳକୁ ଗାନ୍ଧର୍ବ ଓ ଧ୍ରୁବାଗୀତରେ ଯେଉଁ ପଦାବଳୀ ଗାନ ହେଉଥିଲା, ସେଗୁଡ଼ିକ କୌଣସି ନା କୌଣସି ଭାଷାରେ ରଚିତ ନିଶ୍ଚୟ । ସେତେବେଳକୁ ପଦାବଳୀମାନଙ୍କରେ ଅର୍ଦ୍ଧମାଗଧୀ ପ୍ରାକୃତ ଓ ଉଡ୍ରବିଭାଷା ଗାନ ହେଉଥିଲା । ପଦାବଳୀର ଗାୟନ ରୀତିର ବିଶେଷତ୍ୱ ଅନୁସାରେ ନାନା ପ୍ରକାର ପଦଗୀତିର ପ୍ରଚଳନ ଥିଲା । କେବଳ ଭରତମୁନିଙ୍କ 'ନାଟ୍ୟଶାସ୍ତ୍ର' ନୁହେଁ, ଦତ୍ତିଲ ମୁନିଙ୍କ 'ଦତ୍ତିଲମ୍', 'ଦତ୍ତିଲମ୍', ମତଙ୍ଗମୁନିଙ୍କ 'ବୃହଦ୍ଦେଶୀ' ଓ ଶରଙ୍ଗଦେବଙ୍କ 'ସଂଗୀତରତ୍ନାକର' ଇତ୍ୟାଦି ପ୍ରାଚୀନ ଶାସ୍ତ୍ରମାନଙ୍କରେ ପଦଗୀତିର ସଂଜ୍ଞା ଓ ସ୍ୱରୂପ ବିଷୟରେ ଉଲ୍ଲେଖ ଅଛି । ପଦଗୀତି ସମ୍ପର୍କରେ ଆଲୋଚନା କରିବା ପୂର୍ବରୁ ପଦ ଓ ଧ୍ରୁବା ବିଷୟରେ କିଛି ଆଲୋକପାତ କରାଯାଉଛି । କାରଣ ଭାଷାବିନା ପଦ ଓ ଧ୍ରୁବାର ଅସ୍ତିତ୍ୱ ନଥାଏ ।

### ପଦ ଓ ଧ୍ରୁବା

ଭରତମୁନିଙ୍କ ମତରେ ପଦ ହେଉଛି ଗାର୍ନ୍ଧବର ବସ୍ତୁ, ଯାହା ସ୍ୱର, ତାଳ ଓ ପାଦଯୁକ୍ତ ହୁଏ । ତେଣୁ ଗାର୍ନ୍ଧବର ପଦକୁ ଦୁଇଟି ଅର୍ଥରେ ବୁଝାଯାଏ । ଗୋଟିଏ ହେଲା ଗାର୍ନ୍ଧବର ବସ୍ତୁପଦ, ଯାହା ସ୍ୱର ଓ ତାଳକୁ ସୂଚିତ କରେ ବା ସ୍ୱର ଓ ତାଳ ଆଧାରିତ ହୁଏ । ଅନ୍ୟଟି ହେଲା ଯାହା ଅକ୍ଷର ସମୂହ ଦ୍ୱାରା ଗଠିତ ତାହାକୁ

ପଦ କହନ୍ତି । ଏଠାରେ ଅକ୍ଷର କହିଲେ କୌଣସି ଭାଷାର ବର୍ଣ୍ଣକୁ ବୁଝାଏ । ଏହି ପଦ ନିବଦ୍ଧ ଓ ଅନିବଦ୍ଧ ଭେଦରେ ଦୁଇପ୍ରକାର ଅଟେ । ପୁଣି ସତାଳ ଓ ଅତାଳ ଭେଦରେ ଦୁଇପ୍ରକାର ଅଟେ ।

ଭରତଙ୍କ ମତରେ ନିବଦ୍ଧପଦ କହିଲେ ଯାହା ନିର୍ଦ୍ଦିଷ୍ଟ ଅକ୍ଷର ସଂଖ୍ୟା ବିଶିଷ୍ଟ ହୋଇ ଛନ୍ଦ ଓ ଯତିଦ୍ୱାରା ଅଳଙ୍କୃତ ହୁଏ । ଅନିବଦ୍ଧପଦ କହିଲେ ଯେଉଁ ପଦରେ ମୁକ୍ତଛନ୍ଦ ଓ ଯତି ଥାଏ, କିନ୍ତୁ ନିର୍ଦ୍ଦିଷ୍ଟ ସଂଖ୍ୟକ ଅକ୍ଷର ନଥାଏ ଓ ତଦ୍ୱାରା ତାଳ ଓ ଲୟ ରହେ ନାହିଁ । ପ୍ରାଚୀନ ଜାତିଗାନରେ ଅନିବଦ୍ଧ ପଦ ଗାନ ହେଉ ନଥିଲା । କିନ୍ତୁ ଅନିବଦ୍ଧ ପଦରେ ଭାଷାର ଅକ୍ଷର ନିଶ୍ଚୟ ଥାଏ, ଅର୍ଥାତ୍ କୌଣସି ନା କୌଣସି ଭାଷାରେ ରଚିତ ହୁଏ, ଯାହା କାରଣ (ଆଳାପ) ଭାବରେ ଗାନ ହୁଏ । ଭରତଙ୍କ ମତରେ ସତାଳ ହେଉଛି ତାଳବଦ୍ଧ ଓ ଅତାଳ ହେଉଛି ତାଳ ରହିତ । ନିବଦ୍ଧ, ଅନିବଦ୍ଧ, ସତାଳ, ଅତାଳ ଭେଦରେ ଯେଉଁ ଭାଷାର ପଦାବଳୀ ରଚିତ ହୁଏ, ସେହି ଭାଷା ନିଶ୍ଚୟ ବ୍ୟାକରଣ ବଦ୍ଧ ଅଟେ । ଧ୍ରୁବାଗୀତରେ ପ୍ରୟୋଗ ହେଉଥିବା ପଦାବଳୀ ସର୍ବଦା ନିବଦ୍ଧ ଓ ସତାଳ ହୁଏ ।

ଗାର୍ନ୍ଧବ ଯତ୍ନୟା ପ୍ରୋକ୍ତଂ ସ୍ୱରତାଳ ପଦାତ୍ମକମ୍ ।
ପଦଂ ତସ୍ୟ ଭବେଦ୍ ବସ୍ତୁ ସ୍ୱରତାଳାନୁଭାବକମ୍ ।।
ଯତ୍କିଞ୍ଚିଦକ୍ଷରକୃତଂ ତତ୍ସର୍ବଂ ପଦସଂଜ୍ଞିତମ୍ ।
ନିବଦ୍ଧଂ ଚାନିବଦ୍ଧଂ ଚ ତତ୍ପଦଂ ଦ୍ୱିବିଧଂ ସ୍ମୃତମ୍ ।।
ଅତାଳଂ ଚ ସତାଳଂ ଚ ଦ୍ୱିପ୍ରକାରଂ ଚ ତଦ୍ଭବେତ୍ ।
ସତାଳଂ ଚ ଧ୍ରୁବାର୍ଥେଷୁ ନିବଦ୍ଧଂ ତଚ୍ଚ ବୈ ସ୍ମୃତମ୍ ।।୩୯

ଉପରୋକ୍ତ ଶ୍ଳୋକମାନଙ୍କରୁ ଜଣାଯାଉଛି ଯେ, 'ନାଟ୍ୟଶାସ୍ତ୍ର' ରଚିତ ହେବାର ବହୁ ପୂର୍ବରୁ ଜାତିଗାନ, ଗାନ୍ଧର୍ବଗାନ ଓ ଧ୍ରୁବାଗୀତ ଗାନରେ ବିଭିନ୍ନ ଭାଷାର ପଦାବଳୀ ଗାନ ହେଉଥିଲା ଓ ବିଭିନ୍ନ ଭାଷାର ପଦାବଳୀର ଗାୟନ ରୀତି ଅନୁସାରେ ବିଭିନ୍ନ ପଦଗୀତିର ପ୍ରଚଳନ ଥିଲା ।

### ପଦଗୀତିର ଲକ୍ଷଣ ଓ ପ୍ରକାରଭେଦ

ମତଙ୍ଗମୁନିଙ୍କ 'ବୃହଦ୍ଦେଶୀ' ଅନୁସାରେ ଛନ୍ଦ ଓ ଅକ୍ଷର ସମନ୍ୱୟରେ ଚାରିପ୍ରକାର ପଦଗୀତିର ସୃଷ୍ଟି ହୋଇଛି, ଯଥା : ପ୍ରଥମରେ ମାଗଧୀ, ଦ୍ୱିତୀୟରେ ଅର୍ଦ୍ଧମାଗଧୀ, ତୃତୀୟରେ ସମ୍ଭାବିତା ଏବଂ ଚତୁର୍ଥରେ ପୃଥୁଳା ।

ଅଥଗୀତିନ୍ୱକ୍ଷାମି ଛନ୍ଦୋକ୍ଷର ସମନ୍ୱିତାମ୍ ।।
ପ୍ରଥମାମାଗଧୀ ଜ୍ଞେୟା ଦ୍ୱିତୀୟା ଚାର୍ଥମାଗଧୀ ।
ସମ୍ଭାବିତା ତୃତୀୟା ଚ ଚତୁର୍ଥୀ ପୃଥୁଳା ସ୍ମୃତା ।।୪୦

ଏ ସମ୍ବନ୍ଧରେ 'ନାଟ୍ୟଶାସ୍ତ୍ର'ରେ ଉଲ୍ଲେଖ ଅଛି,

ଅତଊର୍ଦ୍ଧ୍ୱଂ ପ୍ରବକ୍ଷାମି ଗୀତାନାମପି ଲକ୍ଷଣମ୍ ।।
ପ୍ରଥମା ମାଗଧୀ ଜ୍ଞେୟା ଦ୍ୱିତୀୟା ତ୍ୱର୍ଦ୍ଧମାଗଧୀ ।
ସମ୍ଭାବି ତୃତୀୟ ଚ ଚତୁର୍ଥୀ ପୃଥୁଳାସ୍ମୃତା ।।୪୧

ଏଠାରେ ଲକ୍ଷ୍ୟ କରାଯାଏ ଯେ, ପ୍ରଥମ ଦୁଇଟି ଗୀତିର ନାମକରଣ ମାଗଧୀ ଓ ଅର୍ଦ୍ଧମାଗଧୀ ଭାଷାର ନାମ ଅନୁସାରେ କରାଯାଇଛି । ଅନ୍ୟ ଦୁଇଟି ଗୀତିର ନାମକରଣ ପଦାବଳୀର ବର୍ଣ୍ଣ ଓ ଅକ୍ଷର ସଂଖ୍ୟାର ଗୁଣ ଅନୁସାରେ କରାଯାଇଛି । ଦତ୍ତିଲ ମୁନିଙ୍କ ମତରେ ପଦଗୀତିର ଲକ୍ଷଣ ।

ତତ୍ର ସ୍ୟାନ୍ମାଗଧୀ ଚିତ୍ରେ ପଦୈଃ ସମନିବୃତ୍ତକୈଃ ।
ଅର୍ଦ୍ଧକାଳନିବୃତ୍ତୈସ୍ତୁ ବର୍ଣ୍ଣଢ୍ୟା ଚାର୍ଧମାଗଧୀ ।।
ବୃତ୍ତୌ ଲଘ୍ୱକ୍ଷରପ୍ରାୟା ଗୀତିଃ ସମ୍ଭାବିତା ସ୍ମୃତା ।
ଗୁର୍ବକ୍ଷରୈସ୍ତୁ ପୃଥୁଳା ବର୍ଣ୍ଣାଢ୍ୟା ଦକ୍ଷିଣେ ସଦା ।। ୪୨

ବିଭିନ୍ନ ଗୀତିର ଲକ୍ଷଣ ସମ୍ପର୍କରେ ମତଙ୍ଗମୁନିଙ୍କ 'ବୃହଦ୍ଦେଶୀ'ରେ ଉଲ୍ଲେଖ ଅଛି–

ତ୍ରିର୍ନିବୃତ୍ତା ଚ ଯା ଗୀତିଃ ସା ଗୀତିର୍ମାଗଧୀ ସ୍ମୃତା ।
ଅର୍ଧକାଳନିବୃତ୍ତା ଚ ବିଜ୍ଞେୟା ତ୍ୱର୍ଧମାଗଧୀ ।।
ସମ୍ଭାବିତା ଚ ବିଜ୍ଞେୟା ଗୁର୍ବକ୍ଷରସମନ୍ୱିତା ।
ପୃଥୁଳାଖ୍ୟା ଚ ବିଜ୍ଞେୟା ଲଘ୍ୱକ୍ଷରସମନ୍ୱିତା ।। ୪୩

ଭରତମୁନିଙ୍କ 'ନାଟ୍ୟଶାସ୍ତ୍ର' ରେ ଉଲ୍ଲେଖ ଅଛି,

ଭିନ୍ନବୃତ୍ତି ପ୍ରଗୀତା ଯା ସା ଗୀତି ମାଗଧୀ ମତା ।
ଅର୍ଦ୍ଧକାଳ ନିବୃତ୍ତା ଚ ବିଜ୍ଞେୟା ତ୍ୱର୍ଦ୍ଧର୍ବମାର୍ଗଧୀ ।
ସମ୍ଭାବିତା ଚ ବିଜ୍ଞେୟା ଗୁର୍ବକ୍ଷରସମନ୍ୱିତା ।
ଲଘ୍ୱକ୍ଷରକୃତା ଯା ତୁ ପୃଥୁଳା ସଂପ୍ରକୀର୍ତ୍ତିତା ।। ୪୪

ଏଠାରେ ଲକ୍ଷ୍ୟ କରାଯାଏ ଯେ ମାଗଧୀଠାରୁ ଅର୍ଦ୍ଧମାଗଧୀର ପଦଗୀତି ଭିନ୍ନ ଥିଲା ଏବଂ ଏହି ଦୁଇପ୍ରକାର ଗୀତିରେ ସଂସ୍କୃତ ବ୍ୟତୀତ ପ୍ରାକୃତ ଭାଷାର ପଦାବଳୀ ଗାନ ହେଉଥିଲା । ସମ୍ଭାବିତା ଓ ପୃଥୁଳା ଗୀତିରେ, ଯଥାକ୍ରମେ ଦୀର୍ଘ ଓ ହ୍ରସ୍ୱ ଅକ୍ଷର ଅଧିକ ଥିଲା । ଶାରଙ୍ଗଦେବଙ୍କ 'ସଂଗୀତରତ୍ନାକର'ରେ ମାଗଧୀ ଓ ଅର୍ଧମାଗଧୀ ଗୀତିର ଉଦାହରଣ ପ୍ରଦାନ କରାଯାଇଛି ଏବଂ ତହିଁରୁ ସ୍ପଷ୍ଟ ଜଣାଯାଏ ଯେ, ଅର୍ଧମାଗଧୀର ଆଦର୍ଶରେ ଆଜିକାଲି ମଧ୍ୟ ଓଡ଼ିଆରେ ପଦାବଳୀ ରଚିତ ହେଉଛି ।୪୫

କେତେକ କହନ୍ତି ଓଡ଼ିଆ ଭାଷା ମାଗଧୀରୁ ସୃଷ୍ଟି ହେଇଛି । ଆଉ କେହି କେହି କହନ୍ତି ଅର୍ଦ୍ଧମାଗଧୀ ହିଁ ଓଡ଼ିଆ ଭାଷା । ଅଧିକାଂଶଙ୍କ ମତରେ ଅର୍ଦ୍ଧମାଗଧୀ ହେଉଛି ଜୈନପ୍ରାକୃତ ଓ ମାଗଧୀ ହେଉଛି ବୌଦ୍ଧ ପ୍ରାକୃତ ବା ପାଲି । କିନ୍ତୁ ଓଡ଼ିଆ ବା ଉଡ୍ର ହେଉଛି 'ନାଟ୍ୟଶାସ୍ତ୍ର' କାଳୀନ ବିଭାଷା ଯାହା ଏହି ଦୁଇଟି ପ୍ରାକୃତଠାରୁ ପ୍ରାଚୀନତର । କାରଣ ସଂସ୍କୃତ ଭାଷାର ପ୍ରଭାବରେ ବିଭାଷା ହିଁ ପ୍ରାକୃତ ରୂପେ ରୂପାନ୍ତରିତ ହୁଏ, ଯେହେତୁ ବିଭାଷା ହେଉଛି ବିଭିନ୍ନ ପ୍ରଦେଶର ସର୍ବସାଧାରଣ ଭାଷା । ମାଗଧୀ ଓ ଅର୍ଦ୍ଧମାଗଧୀର ଦେଶଜ ଶବ୍ଦ ଉଡ୍ର ବା ଓଡ଼ିଆ ଅନ୍ତର୍ଭୁକ୍ତ, ଯାହାକି ପାଣିନିଙ୍କ ପୂର୍ବବର୍ତ୍ତୀ ବୈଦିକ ସଂସ୍କୃତର ସମକାଳୀନ ଅଟେ ।

ମନୁଷ୍ୟ ଭୂମିକାରେ ଅଭିନୟ କରୁଥିବା ପାତ୍ର-ପାତ୍ରୀମାନେ ନାଟକର ସଂଳାପକୁ ଯେଉଁ ଭାଷାରେ କୁହନ୍ତୁ ନା କାହିଁକି ଗୀତକୁ ଅର୍ଦ୍ଧସଂସ୍କୃତ ଭାଷାରେ ଗାନ କରିବା ବିଧେୟ ଥିଲା । କାରଣ ବିଭିନ୍ନ ଅଞ୍ଚଳରେ ବାସ କରୁଥିବା ସବୁ ମଣିଷମାନେ ସଂସ୍କୃତ ଭାଷା ଜାଣି ନଥାନ୍ତି । ତେଣୁ ସେମାନେ ବୁଝୁଥିବା ବିଭାଷାରେ ଗୀତ ଗାନ ହେଉଥିଲା । ନାଟକରେ ଗୀତଗାନ ପ୍ରତି ବିଶେଷ ଯତ୍ନବାନ୍ ହେବାକୁ ପଡୁଥିଲା । କାରଣ ଏହା ନାଟକର ବିଶ୍ରାମ ସ୍ଥାନ ଅଟେ, ଯଦ୍ୱାରା ନାଟକ ପ୍ରଦର୍ଶନରେ କୌଣସି ବିଘ୍ନ ଘଟେ ନାହିଁ । ତେଣୁ ଦର୍ଶକମାନେ ନିର୍ବିଘ୍ନରେ ଆନନ୍ଦର ସହିତ ସମ୍ପୂର୍ଣ୍ଣ ନାଟକଟି ଦେଖିପାରନ୍ତି ।

ଗୀତ ପ୍ରଯତ୍ନଃ ପ୍ରଥମଂ ତୁ କାର୍ଯ୍ୟଃ ଶମ୍ୟାଂ
ହି ନାଟ୍ୟସ୍ୟ ବଦନ୍ତି ଗୀତମ୍ ।।

ଗୀତେ ଚ ବାଦ୍ୟେ ଚ ହି ସଂପ୍ରଯୁକ୍ତେ
ନାଟ୍ୟପ୍ରୟୋଗୋ ନ ବିପତ୍ତିମେତି ।।୪୬

ନାଟକରେ ପଦାବଳୀଯୁକ୍ତ ଗୀତର ଏତେ ମହତ୍ୱ ଥିଲା ଯେ ଭରତମୁନି ବିଭିନ୍ନ ଭାଷାରେ ରଚିତ ଧ୍ରୁବାଗୀତର ଲକ୍ଷଣକୁ ମହାନ୍ ବୋଲି କହିଛନ୍ତି ।

ଏତଦୁକ୍ତଂ ମୟାସମ୍ୟକ୍ ଧ୍ରୁବାଣାଂ ଲକ୍ଷଣଂ ମହତ୍ । ୪୭

'ନାଟ୍ୟଶାସ୍ତ୍ର'ରେ ବର୍ଣ୍ଣିତ ଅଛି ଯେ ଧ୍ରୁବାଗୀତ ଗାନ କରୁଥିବା ପାତ୍ର ଯଦି ଦିବ୍ୟଜନ ହୋଇଥାଆନ୍ତି, ତେବେ ସେ ସଂସ୍କୃତ ଭାଷାରେ ଗାନ କରିବେ । ଯଦି ମନୁଷ୍ୟ ଭୂମିକାରେ ଅଭିନୟ କରୁଥାଆନ୍ତି ତେବେ ଅର୍ଦ୍ଧସଂସ୍କୃତରେ ଗାନ କରିବେ, ଅର୍ଥାତ୍, ପ୍ରାକୃତରେ ଗାନ କରିବେ । ବିଭାଷା ହେଉଛି ପ୍ରାକୃତର ବିକଳ୍ପ ଭାଷା ।

ଦିବ୍ୟାନାଂ ସଂସ୍କୃତଂ ଗାନଂ ପ୍ରମାଣେଷ୍ୱ ବିଧୀୟତେ ।
ଅର୍ଧ ସଂସ୍କୃତମେବଂ ତ ମନୁଷ୍ୟାଣାଂ ପ୍ରୟୋଜୟେତ୍ ।। ୪୮

ଏଥିରୁ ପ୍ରମାଣିତ ହେଉଛି ଯେ, ସେତେବେଳେ ସଂସ୍କୃତ ବ୍ୟତୀତ ଅନ୍ୟ ଭାଷାର ପ୍ରଚଳନ ଥିଲା ଓ ମନୁଷ୍ୟ ଭୂମିକାରେ ଅଭିନୟ କରୁଥିବା ପାତ୍ର-ପାତ୍ରୀମାନେ ସଂସ୍କୃତ ଭାଷାର ପଦାବଳୀ ଗାନ ନ କରି ପ୍ରାକୃତ କିମ୍ବା ବିଭାଷାର ପଦାବଳୀ ଗାନ କରୁଥିଲେ । ପଦଗୀତିରେ ଭାଷାର ଅକ୍ଷର, ଶବ୍ଦ, ପାଦ, ପଦ ଓ ଛନ୍ଦ ପ୍ରତି ଗୁରୁତ୍ୱ ଦିଆଯାଏ ।

**ଭାଷା, ବିଭାଷା ଗୀତି**

ପଦାଶ୍ରୟ ଗୀତି ବ୍ୟତୀତ, ସ୍ୱର ବା ରାଗାଶ୍ରୟ ଗୀତି ମଧ୍ୟ ଅଛି, ଯାହାର ବର୍ଣ୍ଣନା 'ନାଟ୍ୟଶାସ୍ତ୍ର' ଓ 'ଦତ୍ତିଲମ୍'ରେ ନାହିଁ । ମତଙ୍ଗ ମୁନି ଏ ବିଷୟରେ 'ବୃହଦ୍ଦେଶୀ'ରେ ବର୍ଣ୍ଣନା କରିଛନ୍ତି ଓ ପରବର୍ତ୍ତୀ ଶାରଙ୍ଗଦେବ ପ୍ରଭୃତି ଶାସ୍ତ୍ରକାରମାନେ ମଧ୍ୟ ଚର୍ଚ୍ଚା କରିଛନ୍ତି । ମତଙ୍ଗମୁନି ସ୍ୱରାଶ୍ରୟ ଗୀତି ବିଷୟରେ ଆଲୋଚନା କଲାବେଳେ ତାଙ୍କର କେତେକ ପୂର୍ବାଚାର୍ଯ୍ୟ, ଯଥା : ଯଷ୍ଟିକ, କଶ୍ୟପ, ଶାର୍ଦ୍ଦୁଳ ଏବଂ ଭରତଙ୍କ ମତକୁ ଉପସ୍ଥାପନ କରିଛନ୍ତି । ଯଷ୍ଟିକ, କଶ୍ୟପ ଏବଂ ଶାର୍ଦ୍ଦୁଳ ହେଲେ ଭରତମୁନିଙ୍କ ସମକାଳୀନ କିମ୍ବା ପୂର୍ବବର୍ତ୍ତୀ । ମତଙ୍ଗମୁନି ଯେଉଁ ସାତଟି ଗୀତିର ବର୍ଣ୍ଣନା କରିଛନ୍ତି, ସେଗୁଡ଼ିକ ହେଲା : ଶୁଦ୍ଧା, ଭିନ୍ନା, ଗୌଡ଼ୀ, ରାଗ ବା ବେସରା, ସାଧାରଣୀ, ଭାଷା ଓ ବିଭାଷା । ଯଷ୍ଟିକ ଏହି ସାତଟି ଗୀତି ବଦଳରେ କେବଳ ତିନୋଟି ଗୀତି, ଯଥା : ଭାଷା, ବିଭାଷା ଓ ଅନ୍ତରଭାଷାର ଉଲ୍ଲେଖ କରିଛନ୍ତି । କଶ୍ୟପ ଦୁଇଟି ଗୀତି ଯଥା : ଭାଷା ଓ ବିଭାଶର ଚର୍ଚ୍ଚା କରିଛନ୍ତି । କିନ୍ତୁ ଶାର୍ଦ୍ଦୁଳ କେବଳ ଗୋଟିଏ ଭାଷାଗୀତିର ଚର୍ଚ୍ଚା କରିଛନ୍ତି । ଏଥିରୁ ଜଣାଯାଉଛି ଯେ, ଭାଷା ଓ ବିଭାଷାର ବିଶେଷତ୍ୱ ଅନୁସାରେ ଏହିସବୁ ଗୀତିର ପରିକଳ୍ପନା କରାଯାଇଛି । ସେତେବେଳକୁ ଉଡ୍ରବିଭାଷାଗୀତିର ପ୍ରଚଳନ ଥିଲା । ଶୁଦ୍ଧା, ଭିନ୍ନା, ଗୌଡ଼ୀ, ରାଗ (ବେସରା), ସାଧାରଣୀ ଗୀତି ବାଦ୍ୟ ଯନ୍ତ୍ରରେ ବାଦନ ହୋଇପାରେ । କିନ୍ତୁ ତାହା ପଦାବଳୀଯୁକ୍ତ ହୋଇପାରେ ନାହିଁ । କିନ୍ତୁ ଭାଷା ଓ ବିଭାଷା ଗୀତି କେବଳ ମାନବର ଗାତ୍ରରୁ, ଅର୍ଥାତ୍ ମାନବ କଣ୍ଠସ୍ୱରରେ ଗାନ ହୁଏ । କାରଣ କେବଳ ଗୋଟିଏ ମଣିଷ କୌଣସି ଭାଷା ବା ବିଭାଷାରେ ରଚିତ ପଦାବଳୀ ଗାନ କରିପାରେ । ୪୯ ଏହିପରି ବିଭିନ୍ନ ଶାସ୍ତ୍ରରେ ଭାଷା ଓ ବିଭାଷା ଏବଂ ଭାଷାଗୀତି ଓ ବିଭାଷା ଗୀତିର ଚର୍ଚ୍ଚା ହୋଇଥିବାରୁ 'ନାଟ୍ୟଶାସ୍ତ୍ର'ରେ ବର୍ଣ୍ଣିତ ଭାଷା ଓ ବିଭାଷାଗୁଡ଼ିକ ଶାସ୍ତ୍ରୀୟ ଭାଷା

ଅଟେ । ବିଭାଷା କହିଲେ ଏକ ବିକୃତ ଭାଷା ନୁହେଁ । ବିଭାଷା ହେଉଛି ସଂସ୍କୃତ ଓ ପ୍ରାକୃତଠାରୁ ଭିନ୍ନ ଏକ ବିଶିଷ୍ଟ ଦେଶଭାଷା । ଏହା ନ ହୋଇଥିଲେ ବିଭାଷା ଆଦର୍ଶରେ ଏକ ସ୍ୱତନ୍ତ୍ର ବିଭାଷା-ଗୀତିର ବର୍ଗୀକରଣ କରାଯାଇ ନଥାନ୍ତା । ବିଭାଷା-ଗୀତିର ଲକ୍ଷଣ ବିଷୟରେ ମତଙ୍ଗମୁନି 'ବୃହଦ୍ଦେଶୀ'ରେ ଲେଖିଛନ୍ତି,

ଲଲିତୈର୍ବହୁଭିର୍ଦୀପ୍ତୈଃ କମ୍ପିତୈରୌରସୈଃ ସମୈଃ ।
ତାରାତିତାରୈର୍ମସୃଣୈର୍ମଧ୍ୟେ ମଧ୍ୟମଦୀପିତୈଃ ।।
ଗମକୈଃ ଶ୍ରୋତୃସୁଖଦୈର୍ଲଳିତୈସ୍ତୁ ଯଦୃଚ୍ଛୟା ।
ବିଭାଷାଗୀତିସ୍ତୁ ସଂଯୋଜ୍ୟା ଯଥା ଲୋକୈରୁରଜ୍ୟତେ ।। ୫୦

ଅର୍ଥାତ୍ ବିଭାଷାଗୀତିରେ ଗୀତ ଲଳିତ (ଆକର୍ଷକ) ହୁଏ, ଭିନ୍ନ ଭିନ୍ନ ପ୍ରକାରରେ ହୁଏ, ଦୀପ୍ତହୁଏ, କମ୍ପିତ ହୁଏ, ସମତା ରକ୍ଷାକରେ, ଉରସ୍ଥଳରୁ ନିର୍ଗତ ହୋଇ ଉଚ୍ଚ ଓ ଅତ୍ୟୁଚ୍ଚ ହୁଏ, ମସୃଣ ହେବା ସହିତ ମଧ୍ୟମ ସ୍ୱର ଦୀପ୍ତହୁଏ, ଗମକଯୁକ୍ତ ହୁଏ, କର୍ଣ୍ଣକୁ ସୁଖ ଦିଏ, ଲଳିତ (ମଧୁର) ହୁଏ, ସ୍ୱତଃପ୍ରବୃତ୍ତ ହୁଏ, ଜନମାନଙ୍କ ମନୋରଞ୍ଜନଧର୍ମୀ ହୁଏ ।

ମତଙ୍ଗ ମୁନି ବିଭାଷା ଗୀତିର ଯେଉଁ ଲକ୍ଷଣ ପ୍ରଦାନ କରିଛନ୍ତି, ତାହା ଆଜିକାଲି ଓଡ଼ିଆ ଭାଷାରେ ଗାନ ହେଉଥିବା ଓଡ଼ିଶୀ ଗୀତରେ ପ୍ରତିଫଳିତ ହୁଏ । ଓଡ଼ିଶୀ ଗୀତ ଗାନ କଲାବେଳେ ଏହି ଲକ୍ଷଣ ପ୍ରତି ଧ୍ୟାନ ଦେବା ଅତ୍ୟନ୍ତ ଆବଶ୍ୟକ, ଯଦ୍ୱାରା ଓଡ଼ିଆ ଭାଷା ଓ ଓଡ଼ିଶୀ ସଂଗୀତ ଉଭୟ ଶାସ୍ତ୍ରୀୟ ବୋଲି ଶ୍ରୋତାମାନେ ହୃଦୟଙ୍ଗମ କରିପାରିବେ ।

### ବିଭାଷା ଆଦର୍ଶରେ ବିଭାଷା ରାଗ

ପ୍ରାଚୀନ କାଳରେ ସଂଗୀତର ରାଗଗୁଡ଼ିକୁ ମାର୍ଗୀ ଓ ଦେଶୀ ଭେଦରେ ବିଭକ୍ତ କରାଯାଇଥିଲା । ଗ୍ରାମରାଗ, ଭାଷାରାଗ, ବିଭାଷାରାଗ ଓ ଅନ୍ତରଭାଷା ରାଗଗୁଡ଼ିକ ହେଲା ମାର୍ଗୀରାଗ ଓ ରାଗାଙ୍ଗ, ଭାଷାଙ୍ଗ, କ୍ରିୟାଙ୍ଗ, ଉପାଙ୍ଗ ରାଗଗୁଡ଼ିକ ହେଲା ଦେଶୀ ରାଗ । ଯେତେବେଳେ ଗ୍ରାମରାଗର ପ୍ରକାର ଭେଦ ଅନୁସାରେ କେତେକ ରାଗକୁ ଭାଷା, ବିଭାଷା, ଅନ୍ତରଭାଷା ମଧ୍ୟରେ ଅନ୍ତର୍ଭୁକ୍ତ କରାଗଲା, ସେତେବେଳକୁ ଭାରତରେ ପ୍ରଚଳିତ ହେଉଥିବା କେତେକ ଭାଷା ଓ ବିଭାଷାର ଆଦର୍ଶରେ ସେଗୁଡ଼ିକର ନାମକରଣ କରାଗଲା । ସେତେବେଳେ ଭିନ୍ନଭିନ୍ନ ପ୍ରଦେଶରେ ଭିନ୍ନଭିନ୍ନ ଭାଷା ବା ବିଭାଷା ପ୍ରଚଳିତ ଥିଲା ଏବଂ ଅନେକ ରାଗ ମଧ୍ୟ ସେହିସବୁ ଭାଷାଯୁକ୍ତ ଗୀତରେ ଗାନ ହେଉଥିଲା । ତେଣୁ କେତେକ ରାଗକୁ ସେହିସବୁ ପ୍ରଦେଶ ନାମରେ ଭାଷା ନାମରେ ନାମିତ କରାଯାଇ ଭାଷା, ବିଭାଷା ଓ ଅନ୍ତର୍ଭାଷା ରାଗ ଭାବରେ ବର୍ଗୀକରଣ କରାଗଲା । ମତଙ୍ଗମୁନି 'ବୃହଦ୍ଦେଶୀ' ଗ୍ରନ୍ଥର ସମ୍ପାଦିକା ଡ଼.ପ୍ରେମଲତା ଶର୍ମା ଏ ସମ୍ପର୍କରେ ସ୍ପଷ୍ଟୀକରଣ ଦେଇ କହିଛନ୍ତି,

Bhasa-vibhasa-antarahasa is a triad devised for grouping varieties of gramaragas on the model of grouping of dialects and subdialects of languages. 51

ଏଠାରେ ସୂଚନା ଦିଆଯାଉଛି ଯେ ଭାଷା, ବିଭାଷା ଓ ଅନ୍ତରଭାଷା, ସବୁଗୁଡ଼ିକ ଦେଶଭାଷା ଅଟେ । ଭାଷା ଓ ବିଭାଷା ହେଉଛି ଜାତିଭାଷା ବା ଶାସ୍ତ୍ରୀୟ ଭାଷା ଓ ଅନ୍ତରଭାଷା ହେଉଛି ଉପଭାଷା, ଶାଖାଭାଷା ବା ମିଶ୍ରିତ ଭାଷା । 'ନାଟ୍ୟଶାସ୍ତ୍ର' ସଂକଳିତ ହେବା ବେଳକୁ ଗ୍ରାମରାଗ ଓ ଭାଷାରାଗର ପ୍ରଚଳନ ଥିଲେ ମଧ୍ୟ ଏହାର ସର୍ବଶେଷ ବିବରଣୀ ତହିଁରୁ ମିଳେ ନାହିଁ । ମତଙ୍ଗମୁନିଙ୍କ 'ବୃହଦ୍ଦେଶୀ' ଗ୍ରନ୍ଥରେ ଭାଷା-ବିଭାଷା-ଅନ୍ତରଭାଷା ରାଗର ସବିଶେଷ ବିବରଣୀ ପ୍ରଦାନ କରାଯାଇଛି । କେତେକ ଗବେଷକଙ୍କ ମତରେ 'ବୃହଦ୍ଦେଶୀ'ର ରଚୟିତା ମତଙ୍ଗମୁନି ଆବିର୍ଭାବ ଖ୍ରୀଷ୍ଟୀୟ ନବମ ଶତାବ୍ଦୀରେ ହୋଇଥିଲା । ଆଚାର୍ଯ୍ୟ କୈଳାସଚନ୍ଦ୍ର ଦେବ ବୃହସ୍ପତି ଅଭିନବଗୁପ୍ତଙ୍କ ଉକ୍ତିକୁ ଉଦ୍ଧାର କରି ମତଙ୍ଗ ମୁନି ଜଣେ ପ୍ରାଚୀନ ମୁନି ଥିଲେ ବୋଲି କହିଛନ୍ତି । ୫୨

ଭାଷା-ବିଭାଷା ରାଗ ସମ୍ପର୍କରେ ଆଲୋଚନା କଲାବେଳେ ମତଙ୍ଗମୁନି ତାଙ୍କର କେତେକ ପୂର୍ବାଚାର୍ଯ୍ୟ : ଯଷ୍ଟିକ, କାଶ୍ୟପ, ଶାର୍ଦ୍ଦୁଳ ପ୍ରଭୃତି ମୁନିମାନଙ୍କର ମତ ଉପସ୍ଥାପନ କରିଛନ୍ତି, ଯେଉଁମୁନିମାନେ ଭାରତଙ୍କ ସମକାଳୀନ କିମ୍ବା ପୂର୍ବକାଳୀନ ଅଟନ୍ତି । ସେମାନେ କେତେକ ବିଭାଷା ରାଗର ନାମ ଓ ଲକ୍ଷଣ ବର୍ଣ୍ଣନା କରିଛନ୍ତି । ଯଥା,

୧. ଯଷ୍ଟିକଙ୍କ ମତରେ ଦାକ୍ଷିଣାତ୍ୟା ଏବଂ କାଳିନ୍ଦୀ (କାଳିଙ୍ଗୀ) ହେଉଛି ବିଭାଷା ରାଗ ।

୨. ଶାର୍ଦ୍ଦୁଳଙ୍କ ମତରେ ହିନ୍ଦୋଳ ହେଉଛି ଏକ ଭାଷାରାଗ, କିନ୍ତୁ ଦ୍ରାବିଡ଼ୀ, ଆନ୍ଧ୍ରୀ, କୌଶଳୀ, କଳିଙ୍ଗା ହେଉଛି ବିଭାଷା ରାଗ ।

୩. ମତଙ୍ଗଙ୍କ ମତରେ କୌଶଳୀ, କାଳିଙ୍ଗୀ, ଆଭୀରିକା, ଆନ୍ଧ୍ରୀ, ଦ୍ରାବିଡ଼ୀ, ଦାକ୍ଷିଣାତ୍ୟା, କଳିଙ୍ଗା ହେଉଛି ବିଭାଷା ରାଗ । ମତଙ୍ଗମୁନି କଳିଙ୍ଗାକୁ ଅନ୍ତରଭାଷା ରାଗ ବୋଲି କହିଛନ୍ତି ଓ ଶାର୍ଦ୍ଦୁଳ କଳିଙ୍ଗାକୁ ବିଭାଷା ରାଗ ବୋଲି କହିଛନ୍ତି । କୌଶଳୀ ନାମକ

ବିଭାଷା ରାଗଟି କୋଶଳ ଦେଶରୁ ସମ୍ଭୂତ ବୋଲି ଶାର୍ଦ୍ଦୁଳ କହିଛନ୍ତି । ଉତ୍ତର ଓଡ଼ିଶାକୁ ପୂର୍ବରୁ ଦକ୍ଷିଣ କୋଶଳ ବୋଲି କୁହାଯାଉ ଥିଲା ।

କୌଶଳୀ ଦେଶସମ୍ଭୂତା ପ୍ରତିହାରେଷୁ ଗୀୟତେ । ୫୩

କାଳିଙ୍ଗୀ ରାଗ ବିଷୟରେ ମତଙ୍ଗମୁନି ଲେଖିଛନ୍ତି ଯେ ଏହା କଳିଙ୍ଗ ଦେଶରେ ଗାନହୁଏ ।

ଏଷା ହ୍ୟନ୍ତରଭାଷା ବୈ କାଳିଙ୍ଗୈଃ ସା ତୁ ଗୀୟତେ । ୫୪

ଏଠାରେ ବିଭାଷା ରାଗ ବିଷୟରେ ଆଲୋଚନା କରିବାର ପ୍ରାସଙ୍ଗିକତା ହେଲା ଯେ ବିଭାଷା ରାଗଗୁଡ଼ିକ ଉଚ୍ଚକୋଟିର ମାର୍ଗୀ ସଂଗୀତର ଗ୍ରାମରାଗ ଅଟେ । ସେହିପରି ଭାରତୀୟ ଭାଷା ମଧ୍ୟରେ ବିଭାଷାଗୁଡ଼ିକ ଉଚ୍ଚକୋଟିର ଜାତିଭାଷା, ସାଧୁ ବା ଶାସ୍ତ୍ରୀୟ ଭାଷା ଅଟେ । ଆଜିର ଓଡ଼ିଆଭାଷାର (ପୂର୍ବ ନାମ 'ଉଡ୍ରବିଭାଷା') ମଧ୍ୟ ଏକ ସାଧୁ, ଶାସ୍ତ୍ରୀୟ ଓ ପ୍ରାଚୀନ ଭାଷା ଅଟେ ।

କାଳକ୍ରମେ ଗୋଟିଏ ଗୋଟିଏ ଅଞ୍ଚଳ ରାଜନୈତିକ ଶାସନ ଦୃଷ୍ଟିରୁ ବିଭିନ୍ନ ରାଜ୍ୟ, ଖଣ୍ଡ, ମଣ୍ଡଳ, ବିଷୟ ଇତ୍ୟାଦିରେ ବିଭକ୍ତ ହେବାରୁ କେତେକ ଭାଷା କେତେକ ରାଜ୍ୟରେ ପ୍ରସାରିତ, ଏବଂ କେତେକ ରାଜ୍ୟରେ ସଂକୁଚିତ ହେଲା । ପ୍ରମାଣ ସ୍ୱରୂପ ପରୀକ୍ଷା କରାଯାଇପାରେ ଯେ ପଶ୍ଚିମବଙ୍ଗ, ଝାଡ଼ଖଣ୍ଡ, ଛତିଶଗଡ଼ ଓ ଆନ୍ଧ୍ରପ୍ରଦେଶର ଯେଉଁ ଅଞ୍ଚଳଗୁଡ଼ିକ ଓଡ଼ିଶାର ସୀମାନ୍ତକୁ ଲାଗି ରହିଛି, ସେହି ଅଞ୍ଚଳରେ କିଛି ଲୋକଙ୍କର ମାତୃଭାଷା ଓଡ଼ିଆ ଥିଲା, କିନ୍ତୁ ଏବେ ତାଙ୍କ ପୁଅ-ନାତିମାନେ ଆଉ ଓଡ଼ିଆ କହୁନାହାନ୍ତି ।

ଗୌଡ଼ଦେଶର ରାଜା ଶଶାଙ୍କ ଖ୍ରୀ.ଅ.୬୨୦ରେ ମହାନଦୀର ଉତ୍ତରଭାଗରେ ଥିବା ଉତ୍କଳର ଅଞ୍ଚଳକୁ ଅଧିକାର କରି ସୋମଦତ୍ତଙ୍କୁ ରାଜ୍ୟପାଳ ପଦବୀରେ ନିଯୁକ୍ତ କରିଥିଲେ । ପୁଣି କନୌଜର ସମ୍ରାଟ ହର୍ଷବର୍ଦ୍ଧନ ଶଶାଙ୍କଙ୍କୁ ପରାସ୍ତ କରି ଉତ୍କଳର ସେହି ଅଞ୍ଚଳକୁ ଅଧିକାର କରି, ସେହି ସୋମଦତ୍ତଙ୍କୁ ରାଜ୍ୟପାଳ ରୂପେ ରାଜ୍ୟ ଦାୟିତ୍ୱ ଦେଲେ । ସେତେବେଳେ ସୋମଦତ୍ତ ଶାସନ କରୁଥିବା ଏହି ଅଞ୍ଚଳକୁ 'ଓଡ୍ରବିଷୟ' କୁହାଯାଉଥିଲା, ଯାହା ସମ୍ପୂର୍ଣ୍ଣ ଉତ୍କଳ ରାଜ୍ୟ ନୁହେଁ । ସପ୍ତମ ଶତାବ୍ଦୀରେ ଚୀନ ପରିବ୍ରାଜକ ହୁଏନସାଂ 'ଉଡ୍ରବିଷୟ'କୁ 'ଓଡ଼ିଭିସା' ବୋଲି କହିଛନ୍ତି । ୫୫

ଉଡ୍ରକୁ ବା ଓଡ଼୍ରକୁ ଓଡ଼ିଆ ଭାଷାର ଉଡ଼ ବା ଓଡ଼ କୁହାଯାଏ । ସେହି ଦେଶର ଲୋକ ଓ ଭାଷାକୁ ଉଡ଼ିଆ ବା ଓଡ଼ିଆ କୁହନ୍ତି । ଅର୍ଦ୍ଧମାଗଧୀ ଶବ୍ଦ 'ଉଡ଼'ର ଅର୍ଥ ହେଲା ପୁଟ, 'ଉଡ୍ଡ' ଅର୍ଥ ଦୋନା ବା ରତ୍ନ, 'ଉଡ଼ୟ' ଅର୍ଥ ତପସ୍ୱୀ ଆଶ୍ରମ, 'ଉକ୍କଳ' (ଉତ୍କଳ) ଅର୍ଥ ହେଲା କ୍ରମବୃଦ୍ଧିମାନ ଏବଂ 'କଳିଙ୍ଗ' ଅର୍ଥ ହେଲା ଏକ ଆର୍ଯ୍ୟଦେଶର ନାମ । ପାଲି ଶବ୍ଦ 'ଓଡ଼ିଶା' ଅର୍ଥ ହେଲା ସଂଜ୍ଞାପ୍ରାପ୍ତ ବା ସ୍ୱତନ୍ତ୍ର । ଓଡ଼ିଆରେ ଉଡ଼ ବା ଓଡ଼ କହିଲେ ଚାଷଜୀବୀ ଲୋକଙ୍କୁ ବୁଝାଏ ।

ତେଣୁ ଓଡ଼ିଆଭାଷା ହେଉଛି ଏକ ସ୍ୱତନ୍ତ୍ର ଆର୍ଯ୍ୟଦେଶର ପ୍ରାଚୀନ ଚାଷଜୀବୀମାନଙ୍କର କ୍ରମବୃଦ୍ଧିମାନ ଭାଷା । ଆଜିକାଲି ସାରା ଭାରତରେ କୌଣସି ଭାରତୀୟ ଭାଷା କିମ୍ବା ନିଜ ମାତୃଭାଷା ବଦଳରେ ଇଂରାଜୀ ଭାଷା ଶିକ୍ଷା କରିବାକୁ କିଛି ଲୋକ ନିଜକୁ ଗୌରବାନ୍ୱିତ ମନେ କରୁଛନ୍ତି । ଏହା ଫଳରେ ଭାରତୀୟ ଭାଷାଗୁଡ଼ିକ ସଙ୍କୁଚିତ ହୋଇଯାଉଛି । ଏ ସମ୍ବନ୍ଧରେ ଶ୍ରୀ ଅରବିନ୍ଦ କହିଛନ୍ତି-

ଇଂରାଜୀ ଭାଷା ଭାରତୀୟ ସଂସ୍କୃତିର ମାଧ୍ୟମ ସ୍ୱରୂପ ଭାରତୀୟ ଭାଷାଗୁଡ଼ିକୁ ଦୀର୍ଘକାଳ ଆଚ୍ଛାନ୍ନ କରି ରଖିବା ଫଳରେ ବର୍ତ୍ତମାନ ପରିସ୍ଥିତିରେ ଭାରତର ଦ୍ରୁତ ଅଗ୍ରଗତି, ଆତ୍ମାବିଷ୍କାର ଓ ବିକାଶ ଯେତେ ବାଧାପ୍ରାପ୍ତ ହୋଇଛି ସେତେ ଅନ୍ୟ କୌଣସି କଥାଦ୍ୱାରା ହୋଇନାହିଁ । ୫୬

ଭାରତୀୟ ଭାଷା ସଂସ୍କୃତ ସହିତ ଇଂରାଜୀ ଓ ଫରାସୀ ଭାଷାର ତୁଳନା କରି ପଣ୍ଡିଚେରୀ ଆଶ୍ରମର ଶ୍ରୀମା ୧୯୬୦ ମସିହା ଅକ୍ଟୋବର ୮ ତାରିଖରେ କହିଥିଲେ-

ଆମ୍ଭମାନଙ୍କର ଭାଷା (ଫରାସୀ ଓ ଇଂରାଜୀ) ଅତି ଦରିଦ୍ର । ସଂସ୍କୃତ ଥିଲା ଏସବୁଠାରୁ ଉତ୍କୃଷ୍ଟତର । ଭାଷା ଦୃଷ୍ଟିରୁ ଏହା ଅଧିକ ପୂର୍ଣ୍ଣତର ଓ ସୂକ୍ଷ୍ମତର । ଏଣୁ ଏହା ସମ୍ଭବତଃ ଅଧିକ ଉତ୍କୃଷ୍ଟ ଥିଲା । କିନ୍ତୁ ଏହି ଆଧୁନିକ ଭାଷାଗୁଡ଼ିକ ଏତେ କୃତ୍ରିମ ଯେ, ଏଥିରେ ସବୁ ଜିନିଷକୁ ଛୋଟ ଛୋଟ ଖଣ୍ଡରେ ବିଭକ୍ତ କରାଯାଇଛି । ଫଳରେ ସେସବୁର ପଶ୍ଚାତ୍‌ରେ ଥିବା ଆଲୋକଟି ଅନ୍ତର୍ହିତ ହୋଇଛି ।.... ସଂସ୍କୃତ ନିଶ୍ଚିତ ଭାବରେ ଅଧିକ ସାମଗ୍ରିକ ଓ ସର୍ବବ୍ୟାପୀ ଜ୍ଞାନଲୋକ ନିମନ୍ତେ ଅତ୍ୟନ୍ତ ନମନୀୟ ଓ ଉତ୍ତମ ମାଧ୍ୟମ ଯାହାକି ନିଜ ମଧ୍ୟରେ ଅନେକ ବସ୍ତୁକୁ ଧାରଣ କରିଥାଏ ।୫୭

ଯୋଗଗୁରୁ ବାବା ରାମଦେବ ଅକ୍ଟୋବର ୫ ତାରିଖ ୨୦୧୨ ମସିହାରେ ଭୁବନେଶ୍ୱର ଆସିଥିବାବେଳେ ସଂସ୍କୃତ ଓ ଓଡ଼ିଆ ଭାଷା ସମ୍ପର୍କରେ ନିମ୍ନଲିଖିତ ମନ୍ତବ୍ୟ ଦେଇଛନ୍ତି ।

ଓଡ଼ିଆ ଭାଷାର ବିଶେଷ୍ୟଗୁଡ଼ିକ ପ୍ରାଣୀ ବାଚକ, ଅପ୍ରାଣୀବାଚକ ଭାବେ ଭେଦହେଲେ ମଧ୍ୟ ଏହାର ଲିଙ୍ଗଭେଦ ନାହିଁ, ଯାହା ଉତ୍ତର ଭାରତୀୟ ଅନେକ ଭାଷାରେ ଉପଲବ୍ଧ । ଯଥା: ସୁନ୍ଦର ପୁଅଟି, ସୁନ୍ଦର ଝିଅଟି, ସୁନ୍ଦର ଫୁଲଟି... 'ଝିଅ' ପୂର୍ବରୁ 'ସୁନ୍ଦରୀ' ବ୍ୟବହୃତ ହୋଇପାରେ । କିନ୍ତୁ ଏହା ବାଧ୍ୟତାମୂଳକ ନୁହେଁ । ଆଉ ମଧ୍ୟ 'ପୁଅଟି ଯାଉଛି' ଓ 'ଝିଅଟି ଯାଉଛି' ବାକ୍ୟରେ କର୍ତ୍ତାର ଲିଙ୍ଗ ଭେଦ କ୍ରିୟାପଦକୁ ପ୍ରଭାବିତ କରୁନାହିଁ ।

ଓଡ଼ିଆ ବିଶେଷ ଓ ସର୍ବନାମ ପଦଗୁଡ଼ିକ ବିଭକ୍ତି ଗ୍ରହଣ କଲାବେଳେ ଅନେକତ୍ର ଏହା ଶୂନ୍ୟ ବିଭକ୍ତି ଚିହ୍ନକୁ ହିଁ ଗ୍ରହଣ କରିଥାଏ ।

ମୁଁ କଲେଜ ଯାଉଛି । ଏଠାରେ ମୁଁ ସହିତ ପ୍ରଥମା ବିଭକ୍ତି ଚିହ୍ନ ନାହିଁ ।

ସେହିପରି 'କଲେଜ' ସହିତ ଦ୍ୱିତୀୟା ବିଭକ୍ତି ଚିହ୍ନ 'କୁ' ମଧ୍ୟ ନାହିଁ । ଏପରି କାରଣରୁ ଏହି ଭାଷାଟି ସଂସ୍କୃତ ଭାଷାର ନିୟମଠାରୁ ସମ୍ପୂର୍ଣ୍ଣ ଅଲଗା । ସଂସ୍କୃତ ଭାଷାରେ କର୍ତ୍ତା, କର୍ମ ଓ କ୍ରିୟାପଦକୁ ବାକ୍ୟର ଯେକୌଣସି ସ୍ଥାନକୁ ନିଆଯାଇପାରେ, ଯଥା: 'ବିଲେଇ ମୂଷା ଖାଏ' । ଏହା 'ମୂଷା ବିଲେଇ ଖାଏ' ହୋଇପାରିବ ନାହିଁ । ଦ୍ୱିତୀୟା ବିଭକ୍ତିର ରୂପ ଯଦି 'ଶୂନ୍ୟ' ହେଉ ନଥା'ନ୍ତା, ତେବେ ତାହା ଗ୍ରହଣୀୟ ହୋଇଥା'ନ୍ତା, ଯଥା- ମୂଷା (କୁ) ବିଲେଇ ଖାଏ ।

ସଂସ୍କୃତର ୨୦ଟି ଉପସର୍ଗ ବାହାରେ ଓଡ଼ିଆରେ କେତେକ ଉପସର୍ଗ ଉପଲବ୍ଧ, ଯାହା ସଂସ୍କୃତ ପଣ୍ଡିତମାନଙ୍କ ଦ୍ୱାରା ମଧ୍ୟ ପ୍ରୟୋଗ କରାଯାଇଥାଏ । ଯଥା: (ଅ) କଥ୍ୟ, (ଅ)କ୍ଷମ, (କୁ)ପୁତ୍ର, (କୁ) ସଂସ୍କାର, (ସ)ଫଳ, (ସ)ବର୍ଣ୍ଣ ।

ଏହା ବ୍ୟତୀତ ଆଉ କେତେକ ଦେଶଜ ଓ ବୈଦେଶିକ ଉପସର୍ଗ ଓଡ଼ିଆ ଭାଷାରେ ନିଜସ୍ୱ ସମ୍ପଦଭାବେ ପ୍ରୟୋଗ ହୋଇଥାଏ । ଯଥା: (ନା) ବାଳକ, (ନା)ପସନ୍ଦ, (ସହ)ଯୋଗ, (ସହ) ବାସ, (ବେ)ସରକାରୀ, (ବେ)ସାମରିକ, (ଦର)ବୁଢ଼ା, (ଦର) ହାସ ।

ଇଆ, ଆଇ, ତି, ଆମି, ଡି ପରି ଆହୁରି ଅନେକ ପରପ୍ରତ୍ୟୟ ଯୋଗରେ ନୂତନ ଶବ୍ଦ ଗଠିତ ହେବାର ପ୍ରଚୁର ଉଦାହରଣ ଓଡ଼ିଆ ଭାଷାରେ ଉପଲବ୍ଧ, ଯାହା ଅନ୍ୟ କୌଣସି ଭାଷାରୁ ଆନୀତ ନୁହେଁ, ବରଂ ଏଗୁଡ଼ିକ ନିଜସ୍ୱ ସମ୍ପଦ ।

ଗାଉଁଲିଆ, ଲଢ଼ାଇ, ଲଢେଇ, ପାଗଳାମି, ଜୁଆଡ଼ି, ଖଟାଳିଆ, ପାଣିଚିଆ, କାନ୍ଦୁରା, ଖରାଟିଆ ଇତ୍ୟାଦି ଶବ୍ଦଗୁଡ଼ିକରେ ଓଡ଼ିଆ ଭାଷାର ପରପ୍ରତ୍ୟୟଗୁଡ଼ିକର ଶବ୍ଦ ଗଠନକାରୀ କ୍ଷମତା ସ୍ପଷ୍ଟ । ଡାକ୍ତର ଓ ମାଷ୍ଟର ଶବ୍ଦରେ 'ଆଣୀ' ପ୍ରତୀୟ ଓଡ଼ିଆ ଭାଷାର ବୈଶିଷ୍ଟ୍ୟର ଉଦାହରଣ । ନିଜକୁ ସମୃଦ୍ଧ କରିବା ପାଇଁ ଓଡ଼ିଆ ଭାଷା ଅନ୍ୟ ଭାଷାରୁ କେବଳ ପ୍ରତ୍ୟୟ ନୁହେଁ, ବରଂ ଶବ୍ଦମାନଙ୍କୁ ଆଣି ଏକାଠି କରି ନୂତନ ଶବ୍ଦ ତିଆରି କରିଛି । ଯଥା: ରେଳଗାଡ଼ି, ଶିକ୍ଷାବୋର୍ଡ୍, ବିଟ୍‌ଘର, ଜାମାପଟା, କଲିକଜିଆ ।

ସ୍ୱତନ୍ତ୍ର ନୂଆ ନୂଆ ଶବ୍ଦ ତିଆରିରେ ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟ ମଧ୍ୟ କମ୍ ନୁହେଁ । ସୁନ୍ଦର ସମୃଦ୍ଧ ଭାଷାରେ କିପରି ନୂଆନୂଆ ଶବ୍ଦ କଳ୍ପନାରୁ ମଧ୍ୟ ସୃଷ୍ଟି କରାଯାଇପାରେ, ତାହା ମଧ୍ୟ ଏହି ଭାଷାଟିରେ ମିଳେ । ଗଛବୃଛ, ପେଟପାଟଣା, ବାଗସାଗ, ଚଷାଭୂଷା ।

ଅଖା, ଅଲଗୁଣି, ଅହ୍ଲୁଣିଆ ପରି ଅସଂଖ୍ୟ ଦେଶଜ ଶବ୍ଦ ସହ ତତ୍‌ସମ, ତଦ୍‌ଭବ, ବୈଦେଶିକ ଶବ୍ଦ ଓ ନବଗଠିତ ଶବ୍ଦ ସମୂହକୁ ନେଇ ଓଡ଼ିଆ ଭାଷା ନିଜ ଭଣ୍ଡାରକୁ ସମୃଦ୍ଧ କରିଛି । ପୃଥିବୀର ଅନ୍ୟ ଯେକୌଣସି ଭାଷା ପରି ଏହି ଭାଷାଟି ସମସ୍ତ ଗୁଣର ଅଧିକାରୀ ହେବା ସଙ୍ଗେ ଏହାର ସମୃଦ୍ଧ ରୂପବିନ୍ୟାସ ଯେତିକି ପ୍ରାଚୀନ ସେତିକି ନବୀନଭାବେ ନିଜକୁ ପ୍ରତିଷ୍ଠା କରିଛି ।

ଓଡ଼ିଆ ଶବ୍ଦଗୁଡ଼ିକ ବାକ୍ୟରେ ବ୍ୟବହୃତ ହେବାବେଳେ ବିଭକ୍ତି ଚିହ୍ନ କିମ୍ବା ଶୂନ୍ୟଚିହ୍ନ ଗ୍ରହଣ କରନ୍ତି । ଏହି ସମୟରେ ସଂସ୍କୃତ ଭାଷାରେ ଶବ୍ଦର ମୂଳରୂପ ଅନେକତ୍ର ବିଭକ୍ତିଯୋଗରେ ପରିବର୍ତ୍ତିତ ହେଉଥିବାବେଳେ ଓଡ଼ିଆରେ ତାହା ପ୍ରାୟତଃ ହୁଏନାହିଁ । (ପିଲାଟି, ପିଲାକୁ, ପିଲାଦ୍ୱାରା, ପିଲାଠାରୁ, ପିଲାର, ପିଲାଠାରେ ଇତ୍ୟାଦି) ।

ସର୍ବନାମ ପଦରେ କିନ୍ତୁ ତୀର୍ଯ୍ୟକ୍‌ରୂପର ଉଦାହରଣ ମିଳେ, ଯାହା ଅନ୍ୟ ଭାଷାରେ ମଧ୍ୟ ଉପଲବ୍ଧ ।

ଓଡ଼ିଆ ଭାଷାରେ ବ୍ୟବହୃତ ଅବ୍ୟୟମାନଙ୍କ ମଧ୍ୟରୁ କେତେକ ତା'ର ନିଜସ୍ୱ । ସ୍ଥଳବିଶେଷରେ କ୍ରିୟା ବିଶେଷଣ ପଦ ଅବ୍ୟୟ ରୂପେ ବ୍ୟବହୃତ ହେବାର ଉଦାହରଣ ମଧ୍ୟ ମିଳେ । ଚଞ୍ଚଳ (ଆସ), ବେଶ୍ (ହୋଇଛି) । ସେହିପରି ବିଶେଷଣର ବିଶେଷଣ ମଧ୍ୟ ଅବ୍ୟୟ ପଦ ପରି ପ୍ରୟୋଗ ହୁଏ । ଅତି (ସୁନ୍ଦର), ଭାରି (ଭଲ) । ଅନ୍ୟାନ୍ୟ ବିଭିନ୍ନ ପ୍ରକାର ଅବ୍ୟୟପଦ ମଧ୍ୟରୁ କେବଳ କେତୋଟି ସ୍ୱତନ୍ତ୍ର ଓଡ଼ିଆ ଅବ୍ୟୟ ପଦର ଉଦାହରଣ ନିଆଯାଇପାରେ । ଯଥା: ଆଉ, ଓ, ଆଉରି (ସଂଯୋଜକ), ନା

(ପ୍ରଶ୍ନବାଚକ: ଯିବୁନା ?), ଏଇନେ (ସମୟସୂଚକ), ମାନେ (ବ୍ୟାଖାକାରକ: ଅର୍ଥାତ୍), ଆଁ, ଏଁ (ବିସ୍ମୟବାଚକ), ଆଲୋ, ରେ, ହେଇ (ସଂବୋଧବାଚକ), ଟି (ପ୍ରଶ୍ନବାଚକ-ଯିବଟି ?), ମ (ନିଶ୍ଚୟସୂଚକ: ହଁମ), ଲାଗି (ନିମିତ୍ତ ବାଚକ: ତୋ ଲାଗି) । ଉହୁଁ (ନାସ୍ତିବାଚକ) ।

ଗୋଟିଏ ଭାଷାର ବୈଶିଷ୍ଟ୍ୟ ତା'ର କ୍ରିୟାପଦରୁ ହିଁ ସ୍ପଷ୍ଟ ହୋଇଥାଏ । କ୍ରିୟାପଦକୁ ବାକ୍ୟର କେନ୍ଦ୍ର ବୋଲି ସ୍ୱୀକାର କରାଯାଏ । କ୍ରିୟାପଦ ଗଠନରେ ଧାତୁ ଓ ପ୍ରତ୍ୟେୟମାନଙ୍କର ବୈଶିଷ୍ଟ୍ୟ ଗୋଟିଏ ଭାଷାକୁ ଅନ୍ୟ ଭାଷାଠାରୁ ସ୍ୱତନ୍ତ୍ର ବୋଲି ପ୍ରତିପାଦନ କରିବାରେ ସହାୟକ ହୋଇଥାଏ । ଏଣୁ ଓଡ଼ିଆ ଭାଷାର ବୈଶିଷ୍ଟ୍ୟ ଆଲୋଚନାରେ ଏହି ଗୁରୁତ୍ୱପୂର୍ଣ୍ଣ ଅଙ୍ଗଟି ପ୍ରତି ଦୃଷ୍ଟି ପକାଇବାକୁ ହେବ ।

ସମାପିକା, ଅସମାପିକା ଭେଦରେ କ୍ରିୟା ଦୁଇପ୍ରକାର । ଅସମାପିକା କ୍ରିୟାପଦ ଧାତୁ ଓ ସମ୍ପନ୍ନ ବା ଅସମ୍ପନ୍ନ ପ୍ରତ୍ୟୟକୁ ନେଇ ଗଠିତ ହୋଇଥାଏ । (ଯାଇ, ଯାଉ) ।

ସେଠାକୁ ଯାଇ ଦେଖିଲା (ଇ: ସମ୍ପନ୍ନ ପ୍ରତ୍ୟୟ) ।

ଯାଉ/ ଯାଉ ଯାଉ ଦେଖିଲା (ଉ: ଅସମ୍ପନ୍ନ ପ୍ରତ୍ୟୟ) ।

ଓଡ଼ିଆ କ୍ରିୟା ପଦରେ ଦୁଇଟି ଏପରି ପ୍ରତ୍ୟୟ ମଧ୍ୟରୁ ଗୋଟିଏ ସମ୍ପନ୍ନ ଓ ଗୋଟିଏ ଅସଂପନ୍ନ ସୂଚକ । ଏହି ପ୍ରତ୍ୟୟର ଭୂମିକା ସମାପିକା କ୍ରିୟାରେ ମଧ୍ୟ ରହିଛି । ତେବେ ସମାପିକା କ୍ରିୟାପଦ ଗଠନରେ ସହାୟକ ଧାତୁ/କ୍ରିୟା, କାଳ ପ୍ରତ୍ୟୟ ଓ ପୁରୁଷବଚନ ସୂଚକ ପ୍ରତ୍ୟୟ ଯୋଗ ହୋଇଥାଏ । ଓଡ଼ିଆ ଭାଷାର କ୍ରିୟାପଦ ଗଠନରେ ଏ ସମସ୍ତ ଉପାଦାନ ଉପଲବ୍ଧ । ସଂପନ୍ନ ଓ ଅସଂପନ୍ନ ପ୍ରତ୍ୟୟରେ ଯେପରି ଓଡ଼ିଆ ଭାଷାର ନିଜସ୍ୱ ବୈଶିଷ୍ଟ୍ୟ ରହିଛି, ସେହିପରି ମୂଳଧାତୁ ଏବଂ ଅନ୍ୟପ୍ରତ୍ୟୟ ବ୍ୟବହାରରେ ମଧ୍ୟ ଆହରଣ ସହ ମୌଳିକତା ସ୍ପଷ୍ଟ ଉପଲବ୍ଧ । ସ୍ୱଳ୍ପ କେତୋଟି ଉଦାହରଣ ନିମ୍ନରେ ପ୍ରଦତ୍ତ ହେଲା ।

ଓଡ଼ିଆ ଧାତୁ: ଓଳ୍ (ଓଳେଇବା), ସେହିପରି ଆଣ୍ଟିବା, ଖୁଣ୍ଟିବା, ଗୁଞ୍ଜିବା, କାମୁଡିବା, ହାପୁଡିବା ଇତ୍ୟାଦି କ୍ରିୟାପଦରେ ନିଛକ ଓଡ଼ିଆ ଧାତୁର ପ୍ରୟୋଗ ଉପଲବ୍ଧ ।

ସଂପନ୍ନ ବା ଅସଂପନ୍ନ ପ୍ରତ୍ୟୟ ପ୍ରୟୋଗରେ ସ୍ଥଳ ବିଶେଷରେ ରୂପଗତ ପରିବର୍ତ୍ତନ ମଧ୍ୟ ଲକ୍ଷ୍ୟ କରାଯାଏ । ଯଥା: ପଢ୍ + ଆଏ-ଇ + ଲେ (ପଢାଇଲେ/ପଢେଇଲେ) । ପଢ୍ + ଅ/ଆ-ଉ + ଛ (ପଢଉଛ/ପଢାଉଛ) ।

ଏଠାରେ ଇ/ଉ ପୂର୍ବରୁ ଆ/ଏ କିମ୍ବା ଅ/ଆ କେବଳ ସହାୟକଭାବେ ସଂଯୁକ୍ତ ହୋଇଛି । ସେହି ଧାତୁରେ ଅନ୍ୟ ପ୍ରସଙ୍ଗରେ ଏପରି ରୂପ ନଥାଇପାରେ । (ପଢିଲି, ପଢୁଛି) ।

ସ୍ଥଳବିଶେଷରେ ସମାପିକା କ୍ରିୟା ଗଠନ ପାଇଁ ସହାୟକ ଭାବେ 'ଥା' ରୂପ ଯୋଗ କରାଯାଏ । ଯାଇଥିଲି, ଯାଇଥିବି, ଯାଉଥିଲା, ଯାଇଥିବ, ଯାଇଥାନ୍ତା । 'ଥ' ରୂପଟି ସହିତ କାଳ ପ୍ରତ୍ୟୟ ଓ ପରେ ପରେ ପୁରୁଷ ବଚନ ପ୍ରତ୍ୟୟ ଯୁକ୍ତ ହୋଇଥାଏ । ଉପର ଉଦାହରଣରେ 'ଲ', 'ବ' ଦ୍ୱାରା ଅତୀତ ଓ ଭବିଷ୍ୟତକାଳ ସୂଚୀତ ହେଉଛି । ସାଧାରଣଭାବେ ବର୍ତ୍ତମାନକାଳରେ 'ଥ' ରୂପର ପ୍ରୟୋଗ ହୁଏନାହିଁ । ଯଥା: ଯାଇଛି, ଯାଉଛି, ଖାଇଛି, ଖାଉଛି, ପଢିଛି, ପଢୁଛି । 'ଛ' ପୂର୍ବରୁ 'ଅ'ର ବ୍ୟବହାର ଅନେକତ୍ର ଉପଲବ୍ଧ ହୋଇଥାଏ । ଯଥା: ଖାଇଅଛି, ଯାଇଅଛି, ପଢୁଅଛି ଇତ୍ୟାଦି ।

କ୍ରିୟାପଦର ଶେଷରେ ପୁରୁଷ ବଚନ ପ୍ରତ୍ୟୟ ଯୁକ୍ତ ହୋଇଥାଏ । ଓଡ଼ିଆ ଭାଷାରେ ଏଗୁଡିକରୁ କେତୋଟି ଉଦାହରଣ ନେଇ ଭାଷାଟିର ବୈଶିଷ୍ଟ୍ୟ ପ୍ରତିପାଦନ କରାଯାଇପାରେ । ପ୍ରଥମ ପୁରୁଷ ଏକବଚନ-ଇ- ଖାଇଛି, ଖାଇବି, ଯିବି, ଯାଇଥିଲି । ବହୁବଚନ-ଉ- ଖାଇଛୁ, ଖାଇବୁ, ଯିବୁ, ଯାଇଥିଲୁ । ଦ୍ୱିତୀୟପୁରୁଷ ଏକବଚନ-ଉ- ଖାଇଛୁ, ଖାଇବୁ, ଯିବୁ, ଯାଇଥିଲୁ । ବହୁବଚନ-ଅ- ଖାଇବୁ, ଖାଇବ, ଯିବ, ଯାଇଥିବ । ତୃତୀୟ ପୁରୁଷ ଏକବଚନ- ଅ-- ଖାଇବ, ଯିବ, ଯାଇଥିବ । ଇ-ଖାଇଛି- ।

ଲକ୍ଷ୍ୟ କରାଯାଇପାରେ ଗୋଟିଏ ଗୋଟିଏ ପ୍ରତ୍ୟୟ ଭିନ୍ନ ପ୍ରସଙ୍ଗରେ ମଧ୍ୟ ବ୍ୟବହାର ହେଉଥିବାର ଉଦାହରଣ ମିଳେ । ଏ ବୈଶିଷ୍ଟ୍ୟ ଗୋଟିଏ ପୂର୍ଣ୍ଣାଙ୍ଗ ଭାଷାରେ ସ୍ୱତଃ ସୃଷ୍ଟି ହୋଇଥାଏ । ପ୍ରାୟ ସମସ୍ତ ଭାଷାରେ ଏପରି ବ୍ୟତିକ୍ରମ ସ୍ୱାଭାବିକ ରୂପେ ମିଳେ । ତେଣୁ ଓଡ଼ିଆ ଭାଷା ପାଇଁ ମଧ୍ୟ ଏହି ରୂପଗତ ବ୍ୟତିକ୍ରମ ଏକ ବୈଶିଷ୍ଟ୍ୟ ମାତ୍ର ।

ସଂଖ୍ୟାଭିତ୍ତିକ ବହୁବଚନ ବ୍ୟତୀତ ସମ୍ମାନାର୍ଥେ ବହୁବଚନର ପ୍ରୟୋଗ କର୍ତ୍ତା (ବିଶେଷ୍ୟ/ସର୍ବନାମ)ରେ ପ୍ରତିଫଳିତ ହୋଇପାରେ କିମ୍ବା ନ ହୋଇପାରେ, କିନ୍ତୁ ଏହାର ପ୍ରଭାବ କ୍ରିୟାପଦରେ ସ୍ପଷ୍ଟ ଉପଲବ୍ଧ ହୋଇଥାଏ ।

ମୁଁ ଯାଉଛି- ରାଜକୀୟ ଉକ୍ତି: ଆମ୍ଭେ ଯାଉଅଛୁ । (ସାଧାରଣ: ଆମେମାନେ ଯାଉଅଛୁ/ଛୁ) ।

ତୁ ଯା- ସମ୍ମାନାର୍ଥେ: ତୁମେ/ତୁମ୍ଭେ ଯାଅ (ସାଧାରଣ: ତୁମେମାନେ ଯାଅ) ।

ସେ ଯାଏ– ସମ୍ମାନାର୍ଥେ– ସେ ଯାଆନ୍ତି । (ସାଧାରଣ: ସେମାନେ ଯାଆନ୍ତି) ।

ରାମ ଯାଏ– ସମ୍ମାନାର୍ଥେ– ରାମ (ବାବୁ/ଚନ୍ଦ୍ର) ଯାଆନ୍ତି । (ରାମମାନେ ଯାଆନ୍ତି ନୁହେଁ) ।

ଉପରେ ସୂଚିତ ବାକ୍ୟରେ ବହୁବଚନ ପାଇଁ ବ୍ୟବହୃତ କ୍ରିୟାରୂପ ସଂଖ୍ୟାରେ ଏକ ହେଲେ ମଧ୍ୟ ସମ୍ମାନାର୍ଥେ 'ଏକ' ସୂଚିତ କର୍ତ୍ତା ପାଇଁ ବ୍ୟବହୃତ ହୋଇଛି ।

କ୍ରିୟାପଦ ଗଠନରେ ପ୍ରେରଣାର୍ଥକ ଏବଂ ଆଦେଶଭାବ ସୂଚିତ ହେବା ନିମିତ୍ତ ଧାତୁ ସହ ଅ/ଆ/ଓ 'ଯୋଗହେବାର ଉଦାହରଣ ମିଳିଥାଏ, ଯାହା ପୂର୍ବ ସୂଚିତ ପ୍ରତ୍ୟୟମାନଙ୍କ ପୂର୍ବରୁ ପ୍ରୟୋଗ କରାଯାଏ । ଯଥା: କ(ର୍‌ଅ) ଉଛି–କରଉଛି, କ (ର୍‌ଆ) ଉଛି– କରାଉଛି, କ(ର୍‌ଓ)ଉଛି– କରୋଉଛି ।

ଅସଂପନ୍ନ ପ୍ରତ୍ୟେୟ ପୂର୍ବରୁ 'ଅ/ଆ/ଓ'ର ବ୍ୟବହାର ଥିବାବେଳେ ଧ୍ୱନ୍ୟାତ୍ମକ ସମତା ପାଇ ସଂପନ୍ନ ପ୍ରତ୍ୟୟ ପୂର୍ବରୁ 'ଆ/ଏ' ଯୋଗ ହୋଇଥାଏ । ଯଥା: କ(ର୍‌ଆ)ଇଛି–କରାଇଛି, କ(ର୍‌ଏ)ଇଛି– କରେଇଛି ।

ନାସ୍ତିବାଚକ ଚିହ୍ନ ସାଧାରଣଭାବେ କ୍ରିୟାପଦର ପରେ ବ୍ୟବହୃତ ହେଉଥିଲେ ମଧ୍ୟ ଆଞ୍ଚଳିକ ଭେଦରେ ପୂର୍ବରୁ ଏବଂ କ୍ରିୟାପଦର ମଝିରେ, ସହାୟକ ସୂଚକ 'ଥ' ପୂର୍ବରୁ ଅସମାପିକା କ୍ରିୟାର ପୂର୍ବରୁ ଯୋଗ ହୋଇଥାଏ । ଯଥା: କରିନାହିଁ (ଶେଷରେ) । ନାଇଁ କରି (ପୂର୍ବସ୍ଥିତି–ପଶ୍ଚିମାଂଚଳ) । କରି ନଥିଲେ ('ଥ' ପୂର୍ବରେ), ନକରି (ଅସମାପିକା–ପୂର୍ବରେ) ।

ଓଡ଼ିଆ ଭାଷାର କ୍ରିୟାପଦ ଗଠନରେ ସଂସ୍କୃତ 'ଅନ୍ତ' ପ୍ରତ୍ୟୟର ସ୍ୱତନ୍ତ୍ର ଭୂମିକା ରହିଥିଲେ ମଧ୍ୟ ଏହାର ପ୍ରୟୋଗରେ କେତେକ ସ୍ୱାତନ୍ତ୍ର୍ୟ ସ୍ପଷ୍ଟ ଉପଲବ୍ଧ ହୁଏ ।

ତୃତୀୟପୁରୁଷ ବହୁବଚନ (ସାଧାରଣ ଓ ସମ୍ମାନାର୍ଥକ)ରେ ଏହାର ପ୍ରୟୋଗ ହୋଇଥାଏ । ଯଥା: ସେ (ମାନେ) ଯାଇଛନ୍ତି/ ବସିଛନ୍ତି/ ଯାଇନାହାନ୍ତି/ ଆସନ୍ତୁ/ ବସନ୍ତୁ ।

ସମ୍ଭାବନା/ ଆକାଂକ୍ଷା/ ସର୍ତ୍ତ ପାଇଁ 'ଅନ୍ତ' ପ୍ରତ୍ୟୟ କ୍ରିୟାପଦ ଗଠନରେ ବ୍ୟବହୃତ ହୋଇଥାଏ । ଯଥା: ହୁଅନ୍ତା (କି), ଆସନ୍ତେ (କି), ଆସନ୍ତା (ଯଦି) ।

ଉଲ୍ଲେଖନୀୟ ଯେ ଧାତୁ ସହ 'ଅନ୍ତ' ପ୍ରତ୍ୟୟ ଯୁକ୍ତ ହୋଇ ବିଶେଷଣପଦ ମଧ୍ୟ ଗଠିତ ହୁଏ । ଯଥା: ଜଳନ୍ତା, ଉଡନ୍ତା, ଚଳନ୍ତା (ଆନ୍ତ+ଆରୂପ) ।

ଚଳନ୍ତି (ସମୟ), ସରନ୍ତି (ସୋମବାର), (ଅନ୍ତ + ଇ ରୂପ) ।

ଅତୀତକାଳର ପ୍ରତ୍ୟୟ 'ଲ' ମଧ୍ୟ ସର୍ତ୍ତକାଳରେ ପ୍ରୟୋଗ ହୋଇଥାଏ । ଯଥା : ସେ ଆସିଲେ ମୁଁ ଯିବି, ସକାଳୁ ଉଠିଲେ ଦେହ ସୁସ୍ଥ ରହେ ।

ଏହି 'ଲ' ପ୍ରତ୍ୟୟ ମଧ୍ୟ ଧାତୁରୁ ବିଶେଷଣପଦ ସୃଷ୍ଟି କରିଥାଏ । ଶୋଇଲାପୁଅ, ହଜିଲାପାଟ ।

(ଦ୍ରଷ୍ଟବ୍ୟ–ଅନ୍ୟ କୃଦନ୍ତ ପ୍ରତ୍ୟୟ ଯୋଗରେ ମଧ୍ୟ ବିଶେଷଣରୂପ ଗଠିତ ହୁଏ, ତାହା ଏଠାରେ ଅପ୍ରାସଂଗିକ) ।

ଓଡ଼ିଆ କ୍ରିୟାପଦ ସମ୍ବନ୍ଧରେ ସଂକ୍ଷେପରେ କେତୋଟି ଉଦାହରଣ ଆଧାରରେ ଯେତିକି ବିଚାର ଆଲୋଚନା କରାଗଲା, ଏହା ଓଡ଼ିଆ ଭାଷାର ବୈଶିଷ୍ଟ୍ୟକୁ ସ୍ପଷ୍ଟ ପ୍ରମାଣିତ କରେ । ଏକ ସ୍ୱତନ୍ତ୍ର ଭାଷାଭାବରେ ଏହି ସ୍ତରକୁ ଆସିବା ପଛରେ ପ୍ରାୟ ଦୁଇହଜାରକୁ ଅଧିକ ବର୍ଷର ଯେଉଁ କ୍ରମବିକାଶ ପ୍ରକ୍ରିୟା ରହିଛି, ତାହା ହିଁ ଓଡ଼ିଆ ଭାଷାକୁ ଏକ ସ୍ୱତନ୍ତ୍ର ଭାଷାର ମାନ୍ୟ ପ୍ରଦାନ କରିଛି । ଶବ୍ଦଗଠନ, ପଦଗଠନ, ବିଭକ୍ତି ପ୍ରତ୍ୟୟ, ଅବ୍ୟୟ, କ୍ରିୟାପଦ ଇତ୍ୟାଦିରେ ଯେଉଁ କେତୋଟି ବୈଶିଷ୍ଟ୍ୟ ଆଲୋଚନା କରାଗଲା, ଏହାର ବିଶଦ ବ୍ୟାଖ୍ୟା କରାଯାଇ ବିଚାର କରାଗଲେ ଓଡ଼ିଆ ଭାଷାର ନିଜସ୍ୱ ବୈଶିଷ୍ଟ୍ୟ ଅନ୍ୟମାନଙ୍କଠାରୁ ସ୍ପଷ୍ଟ ବାରି ହୋଇପଡିବ । ପଣ୍ଡିତ ନୀଳକଣ୍ଠ ଦାସଙ୍କ ରଚିତ ବ୍ୟାକରଣରେ ଏ ସମ୍ବନ୍ଧରେ ଅଧିକ ତଥ୍ୟ ପ୍ରମାଣ ଉପସ୍ଥାପନ କରାଯାଇଛି ।

ବାକ୍ୟ: 'ବାକ୍ୟ' ଯେକୌଣସି ଭାଷାର ଯୋଗାଯୋଗର ମୁଖ୍ୟ ମାଧ୍ୟମ । ଗଠନ ଦୃଷ୍ଟିରୁ ଏହାର ସ୍ୱରୂପ ସରଳ, ଯୌଗିକ, ଜଟିଳ, ମିଶ୍ର ଯାହା ହେଉନା କାହିଁକି, ପ୍ରୟୋଗ ଦୃଷ୍ଟିରୁ ଏହାର ଏକ ବାହ୍ୟରୂପ ଓ ଅନ୍ତଃରୂପ ଏପରି ଦୁଇଟି ବ୍ୟବସ୍ଥା ରହିଛି । ପ୍ରାସଙ୍ଗିକଭାବେ ବାକ୍ୟର ଅନେକ ଅପ୍ରକାଶିତ ଅଂଶକୁ ମଧ୍ୟ ଶ୍ରୋତା ବୁଝିଯାଏ । ଯଥା: 'ଆପଣ ଘରୁ ଆସିବାବେଳେ ସବୁକାମ ସାରି ଆସିଛ ତ ?' ଗୋଟିଏ ବାକ୍ୟ ।

'ହଁ'– ଗୋଟିଏ ବାକ୍ୟ । 'ହଁ, ସାରି ଆସିଛି'– ଗୋଟିଏ ବାକ୍ୟ ।

ଉତ୍ତରଟିରେ ପ୍ରାସଙ୍ଗିକଭାବେ ଅନ୍ୟାନ୍ୟ ଉହ୍ୟ କଥା ବୁଝି ହୋଇଯାଉଛି । ଏପରି ବ୍ୟବସ୍ଥାରୁ ସ୍ୱତଃ ପ୍ରମାଣିତ ହୁଏ ଯେ ପୃଥିବୀର ଅନ୍ୟ ଭାଷାମାନଙ୍କ ପରି ଓଡ଼ିଆ ଏକ ମର୍ଯ୍ୟାଦା ସଂପନ୍ନ ପୂର୍ଣ୍ଣାଙ୍ଗ ଭାଷା । ଓଡ଼ିଆ ଭାଷାରେ ବାକ୍ୟଗଠନର ନିୟମ ବ୍ୟବସ୍ଥା

ପାରମ୍ପରିକ ସଂସ୍କୃତ ଭାଷାଠାରୁ ସ୍ୱତନ୍ତ୍ର । ସଂସ୍କୃତ ଭାଷାରେ କର୍ତ୍ତା କର୍ମ କ୍ରିୟାର ସ୍ଥାନ ନିର୍ଦ୍ଦିଷ୍ଟ ନୁହେଁ । ଯଥା: ଅହଂ ଗୃହଂ ଗଚ୍ଛାମି । ଗୃହଂ ଗଚ୍ଛାମି ଅହଂ, ଗୃହଂ ଅହଂ ଗଚ୍ଛାମି.... ପ୍ରତ୍ୟେକଟି ବ୍ୟାକରଣ ସିଦ୍ଧ ଏକ ଭାବ/ ଅର୍ଥ ପ୍ରକାଶରେ ବାଧକ ନୁହେଁ । କିନ୍ତୁ ଓଡ଼ିଆ ଭାଷାରେ କର୍ତ୍ତା, କର୍ମ, କ୍ରିୟା ପ୍ରୟୋଗର କ୍ରମ ନିର୍ଦ୍ଦିଷ୍ଟ । କେବଳ ପଦ୍ୟରଚନା କିମ୍ବା ନାଟକୀୟ ସଂଳାପରେ ଆବଶ୍ୟକ ଛନ୍ଦର ବାଧ୍ୟବାଧକତାରେ କେତେକ ପରିବର୍ତ୍ତନ କରାଯାଇପାରେ । କିନ୍ତୁ ସାଧାରଣଭାବେ ଲୋକମୁଖର ଭାଷାରେ କ୍ରମ ସୁରକ୍ଷିତ । ପୂର୍ବରୁ ଏହି ଆଲୋଚନାରେ ବିଭକ୍ତି ପ୍ରସଙ୍ଗରେ ଏହାର ସୂଚନା ପ୍ରଦତ୍ତ ହୋଇଛି । ବିଭକ୍ତି ଚିହ୍ନ ସଂସ୍କୃତ ଭାଷାରେ ପଦସହ ସଂଲଗ୍ନ ହୋଇ ରହିବା ସାଧାରଣ ନିୟମ ହୋଇଥିବାବେଳେ ଓଡ଼ିଆ ଭାଷାରେ କେତେକ ସ୍ଥଳରେ ଏହାର ବ୍ୟତିକ୍ରମ ଦେଖାଯାଏ । ପ୍ରଥମା ବିଭକ୍ତିରେ 'ଟା', 'ଟି' ନିର୍ଦ୍ଦିଷ୍ଟ ସୂଚକ ଚିହ୍ନ ବିଭକ୍ତି ପ୍ରତ୍ୟୟ ପରି ବୋଧ ହେଲେ ମଧ୍ୟ ଏହା ବିଭକ୍ତିର କାର୍ଯ୍ୟ ନକରି କେବଳ ସଂଖ୍ୟାସୂଚକ 'ଏକ'ର ନିର୍ଦ୍ଦିଷ୍ଟ ଅର୍ଥକୁ ନିର୍ଦ୍ଦେଶ କରେ । ପିଲା (ଯେକୌଣସି ଏକ ପିଲା) ଖେଳୁଛି । ପିଲାଟି (ନିର୍ଦ୍ଦିଷ୍ଟ ଗୋଟିଏ ପିଲା) ଖେଳୁଛି ।

ସେହିପରି ବହୁବଚନରେ ପିଲା (ବହୁବଚନ) ଖେଳୁଛନ୍ତି । ପିଲାଏ (ବହୁବଚନ) ଖେଳୁଛନ୍ତି । ପିଲାମାନେ (ବହୁବଚନ) ଖେଳୁଛନ୍ତି । ଏଠାରେ କ୍ରିୟାପଦ ଆଧାରରେ କର୍ତ୍ତାର ବଚନ ବୋଧ ହେଉଥିଲେ ମଧ୍ୟ କୌଣସି ବିଭକ୍ତି ଚିହ୍ନ ନାହିଁ । 'ମାନ' ଏବଂ 'ଏ' କେବଳ ବହୁବଚନର ପ୍ରତ୍ୟୟ ଭାବେ ପ୍ରୟୋଗ ହୋଇଛି ।

ଦ୍ୱିତୀୟା ବିଭକ୍ତିରେ 'ଙ୍କ', 'କୁ' ଏବଂ ୦ ଚିହ୍ନର ସ୍ୱଚ୍ଛନ୍ଦ ପ୍ରୟୋଗ ମିଳିଥାଏ । 'ବଜାରକୁ ଯାଉଛି' । 'ବଜାର ଯାଉଛି' ବାକ୍ୟରେ 'ବଜାରକୁ' ଏବଂ 'ବଜାର' ଉଭୟ କର୍ତ୍ତା ନୁହନ୍ତି, ଓଡ଼ିଆ ଭାଷାର ଏପରି ବାକ୍ୟରେ କର୍ମକାରକ ଓ ଦ୍ୱିତୀୟ ବିଭକ୍ତିର ରୂପ ଭାବେ ପ୍ରୟୋଗ ହୋଇଥାଏ । ଶାବଳ ମାରୁଛି (ଶାବଳ-ରେ-) (ତୃତୀୟ)* କୋଡି ହାଣିବା (କୋଡିରେ-) (ତୃତୀୟ) ଅବଶ୍ୟ ସମାସ କ୍ଷେତ୍ରରେ ଏପରି ଶବ୍ଦର ସ୍ୱତନ୍ତ୍ର ବିଚାର କରାଯାଇପାରେ । ଓଡ଼ିଆ ଭାଷାରେ ବାକ୍ୟରେ ବିଭକ୍ତି ଚିହ୍ନ ଅପେକ୍ଷା ପ୍ରାସଙ୍ଗିକତାର ଗୁରୁତ୍ୱ ଅଧିକ । ଏ ଦୃଷ୍ଟିରୁ ବ୍ୟାକରଣିକ ଶୃଙ୍ଖଳା ଅପେକ୍ଷା ଅର୍ଥପ୍ରକାଶ ବା ଭାବ ଆଦାନପ୍ରଦାନରେ ଏହି ଭାଷା ଅଧିକ ଦୃଷ୍ଟି ଦେଇଥାଏ । ଗୋଟିଏ ଗୋଟିଏ ବ୍ୟାକରଣିକ ପ୍ରତ୍ୟୟ ପ୍ରସଙ୍ଗ କ୍ରମେ ଭିନ୍ନ ଭିନ୍ନ ବିଭକ୍ତିକୁ ପ୍ରକାଶ କରେ । 'ଏ'- ପ୍ରଥମା ବିଭକ୍ତି ବହୁବଚନ (ପିଲେ, ପିଲାଏ) ଦ୍ୱିତୀୟା- (ହାତେ ଆସେ ହାତୁ ପଡିବା ପାଇଁ ସେ), ତୃତୀୟା (ବ୍ରହ୍ମ ଅସ୍ତ୍ରେ ଭେଦକରି), ଚତୁର୍ଥୀ- (ତାଙ୍କେ ଦିଅ), ସପ୍ତମୀ- ଘରେ ବାହାରେ । ଓଡ଼ିଆ ଭାଷାର ବାକ୍ୟରେ ପଦଗଠନ ସମୟରେ ଷଷ୍ଠୀ ବିଭକ୍ତି ଚିହ୍ନ 'ର୍' ଏକ ସ୍ୱତନ୍ତ୍ର ଭୂମିକା ନିର୍ବାହ କରେ । ସ୍ଥଳବିଶେଷରେ ଅନ୍ୟ ବିଭକ୍ତି ପ୍ରତ୍ୟୟର ସହଜତା ପାଇଁ 'ର୍' ରୂପଟି ସହଯୋଗୀ ବା ଆଧାର ରୂପେ କାର୍ଯ୍ୟ କରେ । ଯଥା: ର୍ + ଏ (ଛୁରୀରେ, ହାତରେ, ଗାଆଁରେ) । ର୍ + ଉ (ଗାଆଁରୁ, ଗଛରୁ) (ତା'ଠାରୁ । ର୍ + ଇ (ତାହାରି, ତାଙ୍କରି) ।

ଓଡ଼ିଆ ବାକ୍ୟ ଗଠନରେ କେତେକ 'କ୍ରିୟାହୀନ ବାକ୍ୟ' ଉଲ୍ଲେଖ କରିଥାନ୍ତି । କିନ୍ତୁ ବାସ୍ତବରେ ବାହ୍ୟ ରୂପରେ କ୍ରିୟାପଦ ନଥିଲେ ମଧ୍ୟ ଏହା ସ୍ୱତଃ ଉହ୍ୟ ରହିଥାଏ । ଯଥା: ସେ ଗୋଟିଏ ଭଲ ଲୋକ । ଏପରି ବାକ୍ୟରେ 'ଅଟେ' ରୂପକ ଏକ କ୍ରିୟାପଦର ସ୍ଥିତିକୁ ସ୍ୱୀକାର କରାଯାଏ । ଏହିପରି ଅଟେ, ଅଛି, ହୁଏ, ଥାଏ ଇତ୍ୟାଦି ଅସ୍ତିବାଚକ ଏବଂ ନାହିଁ, ନୁହେଁ ପରି ନାସ୍ତିବାଚକ ରୂପ ବାକ୍ୟରେ କ୍ରିୟାପଦର ଦାୟିତ୍ୱ ନିର୍ବାହ କରିଥାଏ ।

ପାରମ୍ପରିକ ବ୍ୟାକରଣ ଆଧାରରେ ଓଡ଼ିଆ ଭାଷାରେ ବାକ୍ୟଗଠନ ସରଳ, ଯୌଗିକ, ଜଟିଳ ବା ମିଶ୍ର ରୂପର ବ୍ୟବହାର ଏହି ଭାଷାର ପୂର୍ଣ୍ଣତାର ଲକ୍ଷଣ । ସମଗୋତ୍ରୀୟ ଆର୍ଯ୍ୟଭାଷା, ପଡୋଶୀ ଦ୍ରାବିଡ ଭାଷା ଏବଂ ଏ ମାଟିର ଆଦିବାସୀ ଭାଷାରୁ ବହୁ ସମ୍ପଦ ସଂଗ୍ରହ କରି ଓଡ଼ିଆ ଭାଷା ନିଜକୁ ସମୃଦ୍ଧ କରିଛି । ଏଥିସହ ଫାର୍ସୀ, ଉର୍ଦ୍ଦୁ, ଆରବୀ, ପର୍ତ୍ତୁଗୀଜ, ଇଂରାଜୀ ଏବଂ ସାମ୍ପ୍ରତିକ ସମୟରେ ପୃଥିବୀର ଅନେକ ଭାଷାରୁ (ସୁନାମି) ଶବ୍ଦକୁ ଆପଣେଇ ଆହୁରି ବିକଶିତ ହୋଇ ଚାଲିଛି । ଧ୍ୱନି, ଲିପି, ଶବ୍ଦ, ପଦ, ବାକ୍ୟ ଏବଂ ଆହରଣ ଓ ସମନ୍ୱୟ ଗୁଣରେ ବିମଣ୍ଡିତ ଓଡ଼ିଆ ଭାଷା ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତକରେ ନାଟ୍ୟ ସଂଳାପ ଭାବେ, ପରେ ଖାରବେଳଙ୍କ ଶିଳାଲେଖରେ, ଭୌମକର, କେଶରୀବଂଶ, ଗଙ୍ଗବଂଶ, ସୂର୍ଯ୍ୟବଂଶ, ଭୋଇବଂଶର ଶାସନକାଳରେ, ଶ୍ରୀଜଗନ୍ନାଥଙ୍କ ସନ୍ଧାନ, ପ୍ରତିଷ୍ଠା ଓ ରୀତିନୀତିର ବିବର୍ତ୍ତନରେ, ସନାତନ, ଜୈନ, ବୌଦ୍ଧ, ଶୈବ, ଶାକ୍ତ, ବୈଷ୍ଣବ ଦର୍ଶନ ତତ୍ତ୍ୱରେ, ପରିବ୍ରାଜକମାନଙ୍କ ଅନୁଭବରେ, ପଣ୍ଡିତମାନଙ୍କ ଚର୍ଚ୍ଚା ଓ ସୃଷ୍ଟିରେ, ବୈୟାକରଣିକମାନଙ୍କ ବିଚାରରେ ସ୍ଥାନ ପାଇ ନିଜ ପାଇଁ ଏକ ପରମ୍ପରାସିଦ୍ଧ ପ୍ରାମାଣିକ ସ୍ଥାନ ଓ ପରିଚୟ ସୃଷ୍ଟି କରିଛି ।

ସେନାପତି ବଗିଚା, କୁମୁଟିପାଟଣା,
ଜିଲ୍ଲା- ପୁରୀ-୦୨, ଓଡ଼ିଶା

(ସୌଜନ୍ୟ: ନିର୍ଦ୍ଦେଶକ, ଓଡ଼ିଆ ଭାଷା ପ୍ରତିଷ୍ଠାନ, ଭୁବନେଶ୍ୱର-୧)

# ଓଡ଼ିଆ ଭାଷାର ପ୍ରାଚୀନତା

**ପ୍ରଫେସର ଉଦୟ ନାଥ ସାହୁ**

ମାନବ ସଭ୍ୟତାର କ୍ରମ ବିକାଶ ମୂଳରେ ଭାଷା, ଧର୍ମ, ଆଞ୍ଚଳିକ ପରିବେଶ ସହ ରାଜନୈତିକ ଅବସ୍ଥା ବିଦ୍ୟମାନ । ରାଷ୍ଟ୍ରର ନିୟନ୍ତ୍ରଣ ପାଇଁ ଶାସନ ଓ ଶାସିତ ଗୋଷ୍ଠୀ ମଧ୍ୟରେ ପ୍ରଚଳିତ ଭାଷା ହିଁ ମୁଖ୍ୟ ଭୂମିକା ଗ୍ରହଣ କରିଥାଏ । ତେଣୁ ରାଷ୍ଟ୍ର ଓ ଜାତିର ନାମାନୁସାରେ ଭାଷାର ନାମକରଣ କରାଯାଏ । ଏ ଦୃଷ୍ଟିରୁ ବିଚାର କଲେ, ଉଡ୍ରଦେଶ ବା ଉଡ୍ରଜାତିର ଭାଷା 'ଓଡ଼ିଆ' ନାମ ଗ୍ରହଣ କରିଅଛି । ତେବେ ଏହି ଭାଷା ପ୍ରାଚୀନ ଯୁଗରେ ପରିଚିତ ଥିବା କଳିଙ୍ଗ, ତୋଷଳୀ, ମହାକୋଶଳ, କୋଙ୍ଗଦ ପ୍ରଭୃତି ଅଞ୍ଚଳରେ କଥିତ ହେଉଥିଲା । ବର୍ତ୍ତମାନର ଓଡ଼ିଶା ଅତୀତରେ ଉଡ୍ର, କଳିଙ୍ଗ, ତୋଷଳ, ଉତ୍କଳ, କୋଶଳ, କଙ୍ଗୋଦ ମଣ୍ଡଳ ଇତ୍ୟାଦି ନାମରେ ପରିଚିତ ଥିଲା । କୌଣସି ଭାଷାର ପ୍ରାଚୀନତା ଅଧ୍ୟୟନ କରିବାକୁ ହେଲେ ପ୍ରଥମତଃ କଥିତ ଅଞ୍ଚଳର ଅବସ୍ଥିତି ବସବାସ କରୁଥିବା ଜାତି ଏବଂ କଥିତ ହେଉଥିବା ଭାଷାର ଇତିହାସକୁ ଜାଣିବାକୁ ପଡ଼ିବ ।

ଭୌଗଳିକ ଅବସ୍ଥିତି, ଜାତି, ଭାଷାର ଗଠନ ଅନୁସାରେ ଏବଂ ଭାଷାର ଉତ୍ପତ୍ତି ଦୃଷ୍ଟିରୁ ଭାଷାମାନଙ୍କୁ ଶ୍ରେଣୀବଦ୍ଧ କରାଯାଇଥାଏ । ଭାଷାମାନଙ୍କର ଉତ୍ପତ୍ତି ବିଷୟରେ ଅନୁସନ୍ଧାନ କରି ଗୋଟିଏ ମୂଳ ପ୍ରାଚୀନ ଭାଷାରୁ ଉତ୍ପନ୍ନ ଭାଷାମାନଙ୍କୁ ଏକ ପରିବାର ଭୁକ୍ତ କରାଯାଏ । ଖ୍ରୀଷ୍ଟପୂର୍ବ ପ୍ରାୟ ୩୦୦୦ବର୍ଷ ପୂର୍ବେ ଭାରତର ପଶ୍ଚିମୋତ୍ତର ଅଞ୍ଚଳରେ ଦ୍ରାବିଡ଼ୀୟ ଜାତି ରହିଥିଲେ । ସେହି ଦ୍ରାବିଡମାନଙ୍କ ଭାଷାରୁ କାଳକ୍ରମେ ତାଲିମ୍, ମାଲାୟାଲାମ୍, କନ୍ନଡ଼ ଓ ତେଲୁଗୁ ଭାଷା ସୃଷ୍ଟି । ଏହି ଦ୍ରାବିଡ଼ ସଭ୍ୟତା ପରେ ଖ୍ରୀ:ପୂ: ୧୫୦୦ ବେଳକୁ ଆର୍ଯ୍ୟମାନେ ଦଳ ଦଳ ହୋଇ ଭାରତରେ ପଦାର୍ପଣ କରିଥିଲେ । ନବାଗତ ଆର୍ଯ୍ୟ ସମ୍ପ୍ରଦାୟଙ୍କ ଦ୍ୱାରା ବିତାଡ଼ିତ ହୋଇ ଦ୍ରାବିଡ଼ ଗୋଷ୍ଠୀ ଦକ୍ଷିଣ ଭାରତରେ ଅର୍ଥାତ୍ ବିନ୍ଧ୍ୟ ପର୍ବତମାଳାରେ ଆଶ୍ରୟ ନେଲେ । ପୂର୍ବଘାଟ ପର୍ବତମାଳାର ଅଧିକାଂଶ ଅଞ୍ଚଳରେ ଅତି ପ୍ରାଚୀନ କାଳରୁ ଆରମ୍ଭ କରି ଉଡ୍ରଜାତି ବାସ କରୁଥିଲେ । ପ୍ରଥମତଃ ଆର୍ଯ୍ୟ, ଦ୍ୱିତୀୟତଃ ଆଦିମ ଅଧିବାସୀ ଏବଂ ତୃତୀୟତଃ ଦ୍ରାବିଡ଼ ଜାତିର ଭାଷା ପ୍ରଭାବ ଏହି ଉଡ୍ରମାନଙ୍କ ଉପରେ ପଡ଼ିଥିଲା ।

ଏହି ଭାଷାର ମୂଳ ଉତ୍ସ ହେଉଛି ଭାରତୀୟ ଆର୍ଯ୍ୟ ଭାଷା ବା ସଂସ୍କୃତ । ଭାରତୀୟ ଆର୍ଯ୍ୟଭାଷା ତିନିଗୋଟି ସ୍ତର ଦେଇ ଗତି କରିଛି । ଯଥା– ପ୍ରାଚୀନ ବା ପୁରାତନ (ଖ୍ରୀ:ପୂ: ୨୦୦୦ ପୂର୍ବରୁ ଖ୍ରୀଷ୍ଟପୂର୍ବ ୫୦୦) ମଧ୍ୟଯୁଗୀୟ (ଖ୍ରୀ.ପୂ.୫୦୦ ପୂର୍ବରୁ ଖ୍ରୀଷ୍ଟୀୟ୧୦୦୦) ଆଧୁନିକ (ଖ୍ରୀ.୧୦୦୦ ପରବର୍ତ୍ତୀ) । ପ୍ରାଚୀନ ଭାରତୀୟ ଆର୍ଯ୍ୟ ଭାଷାର କାଳରେ ବେଦ, ସଂହିତା, ବ୍ରାହ୍ମଣ, ଆରଣ୍ୟକ, ଉପନିଷଦ ପ୍ରଭୃତି ରଚିତ ହେଲା । ବୈଦିକ ସାହିତ୍ୟର ଭାଷାରେ ବିଭିନ୍ନ ଉପଭାଷା ଦେଖିବାକୁ ମିଳେ । ଭାଷା ତାତ୍ତ୍ୱିକ ଦୃଷ୍ଟିକୋଣରୁ ବୈଦିକ ଭାଷା ପୃଥିବୀର ପ୍ରଧାନତମ ଭାଷା । ଏହି ବୈଦିକ ସଂସ୍କୃତର ପରବର୍ତ୍ତୀ ପର୍ଯ୍ୟାୟକୁ ଲୌକିକ ସଂସ୍କୃତ କୁହାଯାଏ । ରାମାୟଣ– ମହାଭାରତ ଯୁଗରୁ ହିଁ ଏହି ଲୌକିକ ସଂସ୍କୃତର କାଳ ଆରମ୍ଭ । ଜନସାଧାରଣଙ୍କ ଦ୍ୱାରା କଥିତ ସଂସ୍କୃତରୁ ସୃଷ୍ଟି ଲାଭ କରିଥିଲା ମଧ୍ୟଭାରତୀୟ ଆର୍ଯ୍ୟ ଭାଷା । ଏହାକୁ ତିନୋଟି ସ୍ତରରେ ଧ୍ୱନି ପରିବର୍ତ୍ତନ ଆଦି ଦୃଷ୍ଟିରୁ କରାଯାଇପାରେ । ସେଗୁଡ଼ିକ ହେଲା ଯଥା ପାଲି ଭାଷା (ଖ୍ରୀଷ୍ଟପୂର୍ବ ୫୦୦ରୁ ଖ୍ରୀଷ୍ଟପୂର୍ବ ୨୦୦) ପ୍ରାକୃତ ଭାଷା (ଖ୍ରୀଷ୍ଟପୂର୍ବ ୨୦୦ରୁ ଖ୍ରୀଷ୍ଟାବ୍ଦ ୫୦୦), ଅପଭ୍ରଂଶ ଭାଷା (ଖ୍ରୀଷ୍ଟପୂର୍ବ ୫୦୦ରୁ ଖ୍ରୀଷ୍ଟପୂର୍ବ ୧୦୦) ପ୍ରଥମ ସ୍ତର ଅର୍ଥାତ୍ ପାଲିଭାଷା ଅଶୋକଙ୍କ ଅନୁଶାସନମାନଙ୍କରେ ଉପଲବ୍ଧ । ଏହାର ମଧ୍ୟ ବିଭିନ୍ନ ଉପଭାଷା ଥିଲା । ପଦାନ୍ତସ୍ଥିତ ବ୍ୟଞ୍ଜନବର୍ଣ୍ଣ ଓ ବିସର୍ଗ ଏହି ସମୟ ବେଳକୁ

ଲୁପ୍ତ ହୋଇ ସାରିଥିଲା । କେବଳ ଏକମାତ୍ର ଅନୁସ୍ୱାର ହିଁ ଅବିଶଷ୍ଟ ରହିଥିଲା । ଶ,ଷ,ସ କେବଳ 'ସ'ରେ ପରିଣତ ହୋଇଥିଲା ।

ବିକାଶ ଭେଦରେ ପାଲି-ପ୍ରାକୃତ ଭାଷାକୁ ମୁଖ୍ୟତଃ ୫ଭାଗରେ ବିଭକ୍ତ କରାଯାଇପାରେ, ଯଥା- ମାଗଧୀ, ସୌରସେନୀ, ପୈଶାଚୀ, ମହାରାଷ୍ଟ୍ରୀ ଓ ଅର୍ଦ୍ଧମାଗଧୀ । ପ୍ରତ୍ୟେକ ପ୍ରାକୃତ ଶାଖାରୁ ଅପଭ୍ରଂଶ ଭାଷା ସୃଷ୍ଟି ଲାଭ କରିଛି । ପୂର୍ବ ମାଗଧୀ ଅପଭ୍ରଂଶ ମାଗଧୀ ପ୍ରାକୃତର ଅନ୍ୟତମ ଶାଖା ଯେଉଁଥିରୁ ଓଡ଼ିଆ ଉପଭାଷା ବା ଉଡ୍ର ବିଭାଷା ସୃଷ୍ଟି ହୋଇଅଛି । 'ଉଡ୍ର-ପ୍ରାକୃତ' ଭାଷାରେ ପ୍ରଚଳିତ ସଂଖ୍ୟାବାଚକ ଶବ୍ଦରୁ ଅଧିକାଂଶ ଅଦ୍ୟାବଧି ଓଡ଼ିଆରେ ବ୍ୟବହୃତ ହେଉଅଛି । କେତେକ ଶବ୍ଦ କାଳକ୍ରମେ 'ଅପଭ୍ରଂଶ' ହୋଇ 'ବିଭାଷା' ସୃଷ୍ଟି କଲା । ତେଣୁ ମୋଟାମୋଟି ଭାବରେ ଜଣାଯାଏ ଯେ ପ୍ରାଚୀନ ଓଡ଼ିଆ ଭାଷା ଭାରତୀୟ ଆର୍ଯ୍ୟ, ଦ୍ରାବିଡ଼, ଅଷ୍ଟ୍ରିକ୍ ଗୋଷ୍ଠୀ ଭାଷାର ତ୍ରିବେଣୀ ସଂଗମ ।

ମହାଭାରତ ଗ୍ରନ୍ଥ ଅନୁସାରେ ସମଗ୍ର ପୂର୍ବ ଭାରତ ଅଞ୍ଚଳକୁ ଦୀର୍ଘତମା ଋଷି ଓ ରାଣୀ ସୁଦେଷ୍ଣାଙ୍କ ଗର୍ଭରୁ ଜାତ ତିନିପୁତ୍ର ଯଥା- ଅଙ୍ଗ, ବଙ୍ଗ ଓ କଳିଙ୍ଗଙ୍କ ମଧ୍ୟରେ ବାଣ୍ଟି ଦିଆଯାଇଥିଲା । ପ୍ରାଚୀନ ଅଙ୍ଗ, ବଙ୍ଗ ଓ କଳିଙ୍ଗ ବର୍ତ୍ତମାନ ସମୟର ଆସାମ, ବଙ୍ଗଳା ଓ ଓଡ଼ିଶା । ଏହି ତିନିଗୋଟି ରାଜ୍ୟକୁ ରାଢ଼, ଗୌଡ଼ ଓ ଓଡ୍ର ଜନଗୋଷ୍ଠୀ ଗଠନ କରିଥିଲେ ।

ସୋମବଂଶୀ ରାଜାମାନଙ୍କର ଶିଳାଲେଖ ଏବଂ ତାମ୍ର ଶାସନମାନଙ୍କରୁ ଜଣାଯାଏ ଯେ, ଅତୀତରେ ପୂର୍ବଭାରତରେ ଭାଷା, ଲିପି ଏବଂ ସାଂସ୍କୃତିକ ଐକ୍ୟ ଯୋଗୁଁ କଳିଙ୍ଗ, କୋଶଳ, ଓଡ୍ର, ଉତ୍କଳ, ରାଢ଼, କାମରୂପ, ଗୌଡ଼, ବଙ୍ଗ ପ୍ରଭୃତି ରାଜ୍ୟଗୁଡ଼ିକ ଗୋଟିଏ ଭୂଖଣ୍ଡ ଥିଲା । ଏପରିକି 'ମହାଭାରତ' ଲେଖା ହେଲା ବେଳକୁ ଉଡ୍ରମାନେ ପୁଣ୍ଡ୍ର, ଉତ୍କଳ, ମେଖଳ, କଳିଙ୍ଗ ଓ ଆନ୍ଧ୍ରମାନଙ୍କ ସମାନ ସ୍ତରରେ ଥିବାର ଜଣାଯାଏ । ସଂସ୍କୃତ ମହାଭାରତ ଭୀଷ୍ମପର୍ବ (୯.୩୬୫), ଦ୍ରୋଣପର୍ବ (୪.୧୨୨) ଏହି ଉଡ୍ରମାନେ ପ୍ରାଚୀନ ଆର୍ଯ୍ୟ ସଂପ୍ରଦାୟ ଅନ୍ତର୍ଗତ ହୋଇଥିଲେ ହେଁ ଦକ୍ଷିଣ ଭାରତରେ ଉପନିବେଶ ସ୍ଥାପନ କରିବା ଫଳରେ ତାଙ୍କ ଭାଷାରେ ଅଷ୍ଟ୍ରିକ୍ ଭାଷା ସଙ୍ଗେ ଦ୍ରାବିଡ଼ୀୟ ଭାଷାର ପ୍ରଭାବ ପଡ଼ିଥିଲା ।

ଡକ୍ଟର ସୁନୀତି କୁମାର ଚାଟାର୍ଜୀ ମତ ପ୍ରକାଶ କରିଛନ୍ତି ଯେ, ଖାରବେଳଙ୍କ ସମୟରେ (ଖ୍ରୀ.ପୂ. ପ୍ରଥମ ଶତାବ୍ଦୀରେ) ଓଡ଼ିଶାରେ ଦ୍ରାବିଡ଼ ଏବଂ ଆଦିବାସୀ ଶ୍ରେଣୀୟ 'ଅଷ୍ଟ୍ରୋ-ଏସିଆଟିକ୍' ଜାତୀୟ ଲୋକେ ବାସ କରୁଥିଲେ । ଖାରବେଳଙ୍କ ହାତୀଗୁମ୍ଫା ଅଭିଲେଖଟି ଯେଉଁ ପ୍ରାକୃତ ଭାଷାରେ ଲେଖା ହୋଇଛି, ତାହା ହିଁ ଯେ କଳିଙ୍ଗରେ ପ୍ରଚଳିତ ସର୍ବସାଧାରଣ ଲୋକଭାଷା ଥିଲା, ଏହା ନିଃସନ୍ଦେହରେ କୁହାଯାଇପାରେ ।

ଜୈନ ଧର୍ମର ପ୍ରଚାର ପୂର୍ବରୁ ଉତ୍କଳରେ ଆର୍ଯ୍ୟ ସଂସ୍କୃତ ଭାଷା ଓ ଦ୍ରାବିଡ଼ ଭାଷାର ସମ୍ମିଶ୍ରଣରେ ଉତ୍ପନ୍ନ ଏକ ଭାଷା ପ୍ରଚଳିତ ଥିବାର ଦେଖାଯାଏ। ଶ୍ରୀ ଖାରବେଳଙ୍କ ଲେଖାଗୁଡ଼ିକରେ ବାଟ, ଦଣ୍ଡ (ସେନା), କୋଠା (ପକ୍କା ବା ପଥର ଘର) ଘର, ଦହ (ଜଳପୂର୍ଣ୍ଣ ପୁଷ୍କରିଣୀ) ପ୍ରଭୃତି ବହୁତ ଖାଣ୍ଟି ଓଡ଼ିଆ ଶବ୍ଦ ଦେଖାଯାଏ । ତେଣୁ ମନେହୁଏ ଖ୍ରୀ.ପୂ.୨ୟ ଶତାବ୍ଦୀ ବେଳକୁ ଓଡ୍ର ବିଭାଷାର ସୃଷ୍ଟି ହୋଇଥିଲା । କିନ୍ତୁ ବହୁକାଳ ପର୍ଯ୍ୟନ୍ତ ଜୈନ ଧର୍ମର ପ୍ରଚାର ଫଳରେ ଉତ୍କଳୀୟ ଭାଷାରେ ପାଲି ଭାଷାର ପ୍ରଭାବ କ୍ରମଶଃ ବୃଦ୍ଧିଲାଭ କରିଥିଲା । ଅତୀତ କାଳରେ ଉତ୍କଳୀୟମାନଙ୍କୁ ଜୈନ ଯତି, ଶ୍ରମଣ ଏବଂ ପ୍ରଚାରକମାନେ ପାଲି ଭାଷାରେ ଧର୍ମଶିକ୍ଷା ଦେଉଥିଲେ । ତେଣୁ ପାଲି ଭାଷାର ବହୁଳ ବ୍ୟବହାର ଫଳରେ ସେ ଯୁଗର ଉତ୍କଳୀୟ ଭାଷାରେ ଅସଂଖ୍ୟ ପାଲି ଶବ୍ଦ ପ୍ରବେଶ କରିଥିଲା । ତେଣୁ ଏହି ଓଡ଼ିଆ ଭାଷାର ଜନନୀ ଉଡ୍ର ପ୍ରାକୃତରୁ ସୃଷ୍ଟି ହୋଇଥିଲା । ଜୈନ ଧର୍ମର ଭାଷା ହିଁ ପାଲି ଭାଷା । ଏହା କାଳକ୍ରମେ ନାନା ବିବର୍ତ୍ତନ, ପରିବର୍ତ୍ତନ ଓ ପରିବର୍ଦ୍ଧନ ହୋଇ ଓଡ଼ିଆ ଭାଷାରେ ପରିଣତ ହୋଇଛି । ଉଡ୍ର -ପ୍ରାକୃତ ସଙ୍ଗେ ପାଲି ଭାଷାର ସାମଞ୍ଜସ୍ୟ କେତେକ ପରିମାଣରେ ପରିଦୃଷ୍ଟ ହୁଏ ।

ଓଡ଼ିଆ ଭାଷାର ପ୍ରାଚୀନତା ଆଲୋଚନା କରି ଭାଷାତତ୍ତ୍ୱବିତ୍‌ମାନେ ମତପ୍ରକାଶ କରିଛନ୍ତି ଯେ, ଆସାମୀ, ବଙ୍ଗଳା ଓ ଓଡ଼ିଆ ଗୋଟିଏ ପରିବାରର ତିନି ଭଉଣୀ ମଧ୍ୟରେ ଓଡ଼ିଆ ହେଉଛି ବଡ଼ ଭଉଣୀ । ଖ୍ରୀ.୭ମ/୮ମ ଶତାବ୍ଦୀରେ ଓଡ଼ିଆ ଭାଷା ମାଗଧୀ ଅପଭ୍ରଂଶରୁ ଉତ୍ପତ୍ତି ଲାଭ କରିଥିବା ଅନେକ ଅନୁମାନ କରନ୍ତି ।

ଦ୍ୱିତୀୟ/ ୧ମ ଶତକରେ ଲିଖିତ ଭରତଙ୍କ ନାଟ୍ୟ ଶାସ୍ତ୍ରରେ 'ଓଡ୍ର' ବିଭାଷାକୁ ଶବର, ଆଭୀର ଚଣ୍ଡାଳ, ବନଚର, ଦ୍ରାବିଡ଼ ପ୍ରକୃତିଙ୍କର ଭାଷା ସହିତ ସମ୍ବନ୍ଧାନ୍ୱିତ କରାଯାଉଛି ।

ଶାକରାଭୀର-ଚଣ୍ଡାଳ-ଶବର-ଦ୍ରାବିଡ୍ରୋଡ୍ରଜାଃ
ହୀନେ ବନେ ଚରାଣାଂ ଚ ବିଭାଷା ନାଟକେ ସ୍ମୃତା ।

(ନାଟ୍ୟଶାସ୍ତ୍ର- ୩୬ ଶ୍ଳୋକ)

ତତ୍‌କାଳୀନ ଓଡ୍ର ବିଭାଷା ଯେ ଦ୍ରାବିଡ ଓ ଆଦିବାସୀ ଭାଷା ଦ୍ୱାରା ପ୍ରଭାବିତ ହୋଇଥିଲା, କହିଲେ ଭୁଲ୍ ହେବନାହିଁ ।

ଦ୍ୱାଦଶ ଶତାବ୍ଦୀ ବେଳକୁ ଓଡ଼ିଶାରେ ଯେଉଁ ଅପଭ୍ରଂଶ ଭାଷା ପ୍ରଚଳିତ ଥିଲା, ତାକୁ ସେକାଳର ବୈୟା କରଣିକମାନେ ଔଡ୍ରୀ ଅପଭ୍ରଂଶ ଆଖ୍ୟା ଦେଇଥିଲେ । ହେମଚନ୍ଦ୍ର, ମାର୍କଣ୍ଡେୟଙ୍କ ପରି ବ୍ୟାକରଣକାରମାନେ 'ପ୍ରାକୃତ' ହି 'ଅପଭ୍ରଂଶ'ଭାଷା ବୋଲି ଘୋଷଣା କରିଛନ୍ତି ।

କଳିଙ୍ଗରେ ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀରେ ପ୍ରଚଳିତ ଭାଷାର ସ୍ୱରୂପ ମହାରାଜ ଖାରବେଳଙ୍କ ଉଦୟଗିରି ଶିଳା ଲିପିରୁ ପ୍ରଚଳିତ ହୋଇଅଛି । ସେଥିରେ ଯେଉଁ ପ୍ରାକୃତ ଭାଷା (ଉଡ୍ର-ପ୍ରାକୃତ) ବ୍ୟବହୃତ ହୋଇଅଛି, ସେଥିରେ କେତେକ ଶବ୍ଦ ଯଥା -କଂସ, ସୁଭ, ସରୀର, ପୁତ, କୋଠ, ହାଥୀ, ପବତ, ଅଗ, ଘର, ପଛିମ, ପନ୍ଦର, ଅଠମ, ଛ, ଚକ, ବାର (୧୨), ଦସ ପ୍ରଭୃତିରୁ ଓଡ଼ିଆ ଶବ୍ଦର ପରିଚୟ ମିଳେ ।

ଖାରବେଳଙ୍କ ସମୟର ଭାଷା ହେଉଛି ପାଲି ଭାଷା । ଏହି ପାଲି 'ପଲ୍ଲବ' ନାମରୁ ଆସିଥିବା ସମ୍ଭବ । ସମ୍ଭବତଃ ଖାରବେଳଙ୍କ ବଂଶ ସଙ୍ଗେ କାଞ୍ଚିର ପଲ୍ଲବ ବଂଶୀ ରାଜାମାନଙ୍କ ସହିତ ସମ୍ବନ୍ଧ ଥିଲା ।

ଉପରୋକ୍ତ ଆଲୋଚନାରୁ ଆମେ ଏହି ସିଦ୍ଧାନ୍ତରେ ଉପନିତ ହେଉ ଯେ-

୧. ତେବେ ଅଶୋକଙ୍କ ପୂର୍ବରୁ ଓଡ଼ିଶାର ଇତିହାସ କ'ଣ ଥିଲା ଜଣାଯାଏ ନାହିଁ । ଯାହା ଜଣାଯାଇଛି ତାହା ପୌରାଣିକ ବର୍ଣ୍ଣନା ମାତ୍ର ।

୨. ଦୁଇଟି ଶିଳାଲେଖ, ଯଥା ଅଶୋକଙ୍କର ଧଉଳି ଓ ଜଉଗଡ଼ ଖାରବେଳଙ୍କର ଖଣ୍ଡଗିରିର ହାତୀଗୁମ୍ଫା ଅଭିଲେଖ କଳିଙ୍ଗ ସମ୍ପର୍କରେ ଅନେକ ସୂଚନା ଦିଏ ।

୩. ଖ୍ରୀ.ପୂ. ତୃତୀୟ ଶତକରୁ କ୍ରମାନ୍ୱୟରେ ଓଡ଼ିଆ ଭାଷାର ବିକାଶର ଭିତ୍ତି ସ୍ଥାପନ ହୋଇଅଛି । ଏଠାରେ ସୂଚାଇ ଦିଆଯାଇପାରେ ଯେ ଭାରତର ପୂର୍ବାଞ୍ଚଳ ଅର୍ଥାତ୍ ବଙ୍ଗ, ଆସାମରେ ଏ ପ୍ରକାର ପ୍ରାଚୀନ ଐତିହାସିକ ଅଭିଲେଖ ନାହିଁ ।

୪. ଓଡ଼ିଶାରେ ଧର୍ମର ଇତିହାସରେ ଅଶୋକ ଏବଂ ଖାରବେଳଙ୍କର ରାଜତ୍ୱ ମଧ୍ୟ ଯଥାକ୍ରମେ ବୌଦ୍ଧ ଓ ଜୈନ ଧର୍ମର ଯଥାର୍ଥ ଇତିହାସରୁ ଆରମ୍ଭ ହୁଏ ।

୫. ଅଶୋକ ଓ ଖାରବେଳଙ୍କ ଅଭିଲେଖ ଦୁଇଟି ଓଡ଼ିଶାରେ ପାଲି ଭାଷାର ସର୍ବପ୍ରାଚୀନ ଅଭିଲେଖ ।

୬. ଅଶୋକଙ୍କର ଦୁଇଟିଯାକ ଶିଳାଲେଖ ଶୁଦ୍ଧ ପାଲିଭାଷା ଓ ବ୍ରାହ୍ମୀଲିପିରେ ଉତ୍କୀର୍ଣ୍ଣ ହୋଇଅଛି । ଖାରବେଳଙ୍କର ହାତୀଗୁମ୍ଫା ଶିଳାଲେଖ ବ୍ରାହ୍ମୀଲିପିରେ ଖୋଦିତ । କିନ୍ତୁ ଏହାର ଭାଷାରେ କ୍ୱଚିତ ପାଲି, କ୍ୱଚିତ ଅର୍ଦ୍ଧମାଗଧୀ ଭାଷାର ଲକ୍ଷଣ ମିଳିଥାଏ ।

୭. 'ପାଲି' ଭାଷାର ଜନ୍ମସ୍ଥାନ 'କଳିଙ୍ଗ' । ଜର୍ମାନ ପଣ୍ଡିତ ହରମ୍ୟାନ୍ ଓଲେଚେନବର୍ଗ ତାଙ୍କର 'ବିନୟ ପୀଟକ' ମୁଖବନ୍ଧରେ ଏହା ସୂଚନା ଦେଇଅଛନ୍ତି । ତାଙ୍କ ମତରେ ସିଂହଳରେ ପାଲି ଭାଷା ମାଧ୍ୟମରେ ଧର୍ମ ପ୍ରଚାରିତ ହେବାମୂଳରେ ରହିଛି କଳିଙ୍ଗ ଦେଶର ପାଲି ଭାଷାର ପ୍ରଭାବ ।

୮. ପାଲି ଭାଷା ସହିତ ଅର୍ଦ୍ଧ ମାଗଧୀର ଏବଂ ଅର୍ଦ୍ଧ ମାଗଧୀ ସହିତ ପୂର୍ବୀ ମାଗଧୀ ଅପଭ୍ରଂଶର ଘନିଷ୍ଠ ସଂପର୍କ ରହିଛି । ପୂର୍ବ ମାଗଧୀ ଅପଭ୍ରଂଶରୁ ଓଡ଼ିଆ ଭାଷାର ସୃଷ୍ଟି । ତେଣୁ ଅର୍ଦ୍ଧ ମାଗଧୀ ସହିତ ଓଡ଼ିଆ ଭାଷାର ଅଦୂର ସଂପର୍କ ନିହିତ । ପାଲି ଭାଷା ସହିତ ଓଡ଼ିଆ ଭାଷାର ସାଦୃଶ୍ୟ ରହିବା ସ୍ୱାଭାବିକ ।

୯. ଅଶୋକ ଓ ଖାରବେଳଙ୍କ ଅଭିଲେଖ ଓଡ଼ିଶାର ପ୍ରଥମ ଲିଖିତ ଭାଷା ଓ ସାହିତ୍ୟର ଉନ୍ମେଷ । ଖ୍ରୀ.ପୂ. ୧ମ ଶତାବ୍ଦୀରେ ଖୋଦିତ ହାତୀଗୁମ୍ଫା ଶିଳାଲେଖରେ ଯେଉଁ ଭାଷା ବ୍ୟବହୃତ, ତାହା ହିଁ ଓଡ଼ିଶାରେ ଦୁଇ ହଜାର ବର୍ଷ ପୂର୍ବର ଲୋକ ପ୍ରଚଳିତ ଭାଷା । ଏଥିରୁ ଓଡ଼ିଆ ଭାଷାର ପ୍ରାଚୀନତା ଲକ୍ଷ୍ୟ କରାଯାଏ ।

**ସହାୟକ ଗ୍ରନ୍ଥ ସୂଚୀ**


୧. ଓଡ଼ିଆ ଭାଷାର ଉତ୍ପତ୍ତି ଓ କ୍ରମବିକାଶ-ଡକ୍ଟର ବଂଶୀଧର ମହାନ୍ତି

୨. ଓଡ଼ିଆ ଭାଷାର ଉପଭାଷା-ଡକ୍ଟର ସତ୍ୟନାରାୟଣ ରାଜଗୁରୁ ।

୩. ପ୍ରାଚୀନ ଉତ୍କଳ-ଜଗବନ୍ଧୁ ସିଂହ

୪. ଓଡ଼ିଆ ସାହିତ୍ୟର କ୍ରମପରିଣାମ-ପଣ୍ଡିତ ନୀଳକଣ୍ଠ ଦାସ

୫. Inscriptions of Khandagiri and Udayagiri- B.M. Barua

୬. ଶ୍ରୀ ଖାରବେଳ-ଶ୍ରୀ କେଦାରନାଥ ମହାପାତ୍ର



ବିଭାଗ ମୁଖ୍ୟ
ସ୍ନାତକୋତ୍ତର ଓଡ଼ିଆ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର, ଭୁବନେଶ୍ୱର-୪


(ସୌଜନ୍ୟ : ନିର୍ଦ୍ଦେଶକ, ଓଡ଼ିଶା ଭାଷା ପ୍ରତିଷ୍ଠାନ, ଭୁବନେଶ୍ୱର-୧)

# ମାତୃଭାଷା ଓଡ଼ିଆ

**ଡଃ ବିଜୟ ପ୍ରସାଦ ମହାପାତ୍ର**

ଏବେ ଓଡ଼ିଶାରେ କିଛି କିଛି ଲୋକ ବିଶ୍ୱାସ କଲେଣି ଯେ ସତେ ସତେ ଆଗାମୀ କେଇବର୍ଷ ଭିତରେ ଓଡ଼ିଆ ଭାଷାଟା ମରିଯାଇପାରେ । ଯେଉଁମାନେ ଏ ଦୁର୍ବିପାକରେ ବିଶ୍ୱାସ ରଖନ୍ତି ଓ ଭୟ କରନ୍ତି, ସେମାନଙ୍କ ଭିତରେ କେତେକ ନେତୃସ୍ଥାନୀୟ ବ୍ୟକ୍ତି ଓ ବେସରକାରୀ ଅନୁଷ୍ଠାନ ବି ଏବେ ସାମିଲ ହୋଇଛନ୍ତି । ଏହା ଓଡ଼ିଆ ଜାତି ପକ୍ଷରେ ସୁଖର କଥା, କାରଣ ଏଇମାନେ ହିଁ ଜନମତକୁ ଏ ବିଷୟ ପ୍ରତି ସଂଗଠିତ କରିବେ ଓ ପରିଚାଳିତ କରିବେ । କହିବେ ବଡ଼ପାଟିରେ ଲେଖି ଛାପି ସଭା ସମିତିରେ ଡାକବାଜି ଲଗାଇ, ପୋଡ଼ାଜଳା କରି, ଭାଷାବର୍ଷ ପାଳନ କରି ଯେ ଆହେ ଓଡ଼ିଆଏ ! ତୁମ ମା' ମରିଯାଉଛି, ଆଉ ତୁମେ ଶୃଙ୍ଗାର ଶତକରେ ମାତିଛ କଣ ?

ଓଡ଼ିଆ ଭାଷା ଭାରତର ବର୍ତ୍ତମାନ ପରିସ୍ଥିତିରେ ବିପନ୍ନ । ଭାଷା ବିଜ୍ଞାନର ସୂଚନା ମଧ୍ୟ ସେୟା । ଗୋଟିଏ ମରଣାପନ୍ନ ରୋଗୀର ନାଡ଼ି ଚିପିଲେ ଜଣେ ଡାକ୍ତର ଯେପରି ଜାଣିପାରେ ଯେ ମୃତ୍ୟୁ ଆସନ୍ନ, ଗୋଟିଏ ଭାଷାର ସେଇ ଦୁଃସମୟ ଆସିଛି କି ନାହିଁ, ଜାଣିବା ଆଜିର ବିଜ୍ଞାନ ପକ୍ଷରେ ଅସମ୍ଭବ ନୁହେଁ । ସାରା ବିଶ୍ୱରେ ତତ୍‌ବିଦମାନଙ୍କ ଦ୍ୱାରା ଏହାର ଅନୁସନ୍ଧାନ ଚାଲିଛି । ଆଣବିକ ଶକ୍ତିର ଯେମିତି ଗୋଟିଏ ଭଲ ଦିଗ ଅଛି, ଖରାପ ଦିଗଟିଏ ବି ଅଛି । ସବୁ ବିଜ୍ଞାନର ଦୁଇଟି ରାସ୍ତା– ଗୋଟିଏ ଦିଗରେ ଏହା ରୋଗୀକୁ ଯେପରି ନିରାମୟ କରିପାରେ, ସେହିପରି ତାକୁ ଖତମ୍ ବି କରିପାରେ । ଭାଷା ବିଜ୍ଞାନର ଏହି ମଣିଷମାରୁ ଦିଗଟିକୁ ପ୍ରୟୋଗ କରି ଭାରତବର୍ଷର ଅନେକ ଗୁଡ଼ିଏ ଭାଷାକୁ ମାରିଦେବାର ଚେଷ୍ଟା ପ୍ରବଳ ହୋଇ ଉଠିଛି । ତେବେ ଏ ବିଷର ବଟିକା ଗୁଡ଼ରେ ପାଗ କରାହୋଇଛି । ମୃତ୍ୟୁ ଆସିବ ନିଦରେ– ନିଠେଇ ନିଠେଇ, ମଠେଇ ମଠେଇ । ଆଗ ଆପଣଙ୍କର ହାତଟାଏ ଯିବ, ତା'ପରେ ଗୋଡ଼ଟାଏ । ତା'ପରେ ନାଟା କି କାନ ଦୁଇଟା । ଶେଷକୁ ଯେତେବେଳେ ଆତତାୟୀ ଭୁକେଇ ଦେବ ତାର ମାରଣାସ୍ତ୍ର ଆପଣଙ୍କ ବୁକୁରେ ସୁଖର ବିଷୟ ଆପଣ କିଛି ଜାଣିପାରିବେ ନାହିଁ, ଆପଣ ତା'ପୂର୍ବରୁ ମରିସାରିଥିବେ । ଭାରତର ବିହାର ପ୍ରଦେଶରେ ମୈଥିଳ ବୋଲି ଗୋଟିଏ ଜାତି ଅଛନ୍ତି– ରାମାୟଣର ସେଇ ପ୍ରାଚୀନ ମୈଥିଳୀ ସୀତା ଯେଉଁଠି ଜନ୍ମ ନେବାକୁ ବାଛିଥିଲେ । ତାଙ୍କରି ସନ୍ତାନ ଏମାନେ । ସେଠାର ଲୋକେ ମୈଥିଳୀ ବୋଲି ଗୋଟିଏ ଭାଷା କହିଥାନ୍ତି। ଅନେକଟା ଆମ ଓଡ଼ିଆ ଭାଷା ସାଙ୍ଗରେ ମିଳେ । ଆମ ଭୁଆସୁଣୀ କଥାଟା ବୋଧହୁଏ ତାଙ୍କରି ବହୁ ଆସିନ୍ ବା ପହିଲିପାଳି ଆସିଥିବା ବୋହୂ କଥାରୁ ଆସିଛି । ତାଙ୍କ ବ୍ରହ୍ମଣମାନେ ଆମ ଓଡ଼ିଆ ବ୍ରାହ୍ମଣମାନଙ୍କ ପରି ମାଛ ଖାଆନ୍ତି । ବହୁତ ମେଳ ଅଛି ତାଙ୍କ ଆମ ଭିତରେ । ଆମ ଭାଷା ପରି ତାଙ୍କ ଭାଷାର ବି ଗୋଟିଏ ଅକ୍ଷର ଥିଲା । ତାକୁ କରିତ୍‌କର୍ମା ବଙ୍ଗାଳୀମାନେ ଛଡ଼ାଇନେଇ ମାଡ଼ିବସିଲେ, ଯେମିତି ଆମ ଜଗନ୍ନାଥଙ୍କ ଭୋଗରୁ ରସଗୋଲାକୁ ଆମଠୁ ଛଡ଼ାଇନେଇ ନିଜ ନାଁରେ ଚଳାଇଲେ। ଏବେ ଆମ ରସଗୋଲା ବେଙ୍ଗଲୀ ସୁଇଟ୍‌ସ ହୋଇ ସାରା ପୃଥିବୀ ପରିକ୍ରମା କରୁଛି । ସଂପ୍ରତି ଆମ ଓଡ଼ିଶୀ ନାଚ ଉପରେ ସେମାନଙ୍କ ଆଖି ପଡ଼ିଛି । ସେହିପରି ଜରାଗ୍ରସ୍ତ ମୈଥିଳୀ ଅକ୍ଷର ହୋଇଛି ବିଶ୍ୱପ୍ରସିଦ୍ଧ ମହାମହିମ ବଙ୍ଗଳା ଭାଷାରୁ ଅକ୍ଷର । ମୈଥିଳୀର ହାତଟାଏ ଗଲା। ମୈଥିଳୀ ନିଜ ଅକ୍ଷର ହରାଇ ଭେକାନି ହୋଇ ବୁଲୁଛି । ମୈଥିଳୀ ଭାଷାରେ ବି ଉଚ୍ଚଦରର ସାହିତ୍ୟ ଲେଖାହୋଇଥିଲା । ଆମରି ପରି ବେଶୀ ପ୍ରାଚୀନ ନୁହେଁ । କି ବେଶୀ ନୂଆ ନୁହେଁ ଆମ ସାରଳା ଦାସ, ବଳରାମ ଦାସଙ୍କ ସମୟରେ ଯେପରି ପ୍ରବଳ ସାହିତ୍ୟ ଲେଖା ଆରମ୍ଭ ହୁଏ, ଏ ଭାଷାରେ ବି ସେମିତି ସାହିତ୍ୟ ସୃଷ୍ଟି ହୋଇଥିଲା । ଆଉ ଲେଖା ହେଉନି କିଛି ସେ ଭାଷାରେ । ଯଦିବା ହେଉଛି, ସେ କେବଳ ସାହିତ୍ୟ ଏକାଡ଼େମୀର ମୁହମତକୁ। ତାକୁ ସ୍ୱାଧୀନ ଜୀବନ୍ତ ସାହିତ୍ୟ

କୁହାଯିବ ନାହିଁ ଗୋଡ଼ ଦୁଇଟା ଗଲା । ଏ ଭାଷା ନିଜର ସ୍ୱତନ୍ତ୍ର ନାଆଁ ବି ହରାଇଛି । ହୋଇଛି ହିନ୍ଦୀର ଏକ ପ୍ରକାର ଭେଦ, ଅର୍ଥାତ୍ ନିଜର ସ୍ୱତନ୍ତ୍ରତା ହରାଇଛି । ନାକଟା ଗଲା । ଏଇ ଭାଷା ପାଇଁ ବ୍ୟାକରଣ ନାହିଁ ମୈଥିଳୀ ପିଲାଏ ହିନ୍ଦୀ ବ୍ୟାକରଣ ପଢୁଛନ୍ତି, ଓଡ଼ିଆ ପିଲାଏ ସଂସ୍କୃତ ବ୍ୟାକରଣ ପଢ଼ିଲା ପରି । ଆଖି ଦୁଇଟା ଗଲା ଏପରି ନାନା ବ୍ୟବସ୍ଥା ପରେ ଏବେ ସେମାନଙ୍କ ମର୍ମସ୍ଥଳରେ ତେଣ୍ଟା ବୁଲାଇବା ପାଇଁ ଚେଷ୍ଟା ଚାଲିଛି । ଏ ଭାଷାରେ ଯେମିତି ପ୍ରାଥମିକ ଶିକ୍ଷା ଦିଆ ନଯାଏ । ଅର୍ଥାତ୍ ମୈଥିଳୀ ଶିଶୁଙ୍କୁ ଯେପରି ନିଜ ମାତୃଭାଷାରେ ସାକ୍ଷର ହେବାର ସୁଯୋଗ ନ ମିଳେ । ଏଥିରୁ ମୈଥିଳୀ ଶିଶୁ ବୁଝିବ ଯେ, ତା'ର ମାତୃଭାଷା ଗୋଟିଏ ଲିଖିତ ଭାଷା ନୁହେଁ ଏହା ଅଶିକ୍ଷିତ, ଅଣପାଠୁଆମାନଙ୍କର ଭାଷା । ନିଜ ଭାଷା ପ୍ରତି ଏଇ ଧାରଣା ଯେତେବେଳେ ବଦ୍ଧମୂଳ ହେବ, ସେଇ ହେବ ଭାଷାର ମୃତ୍ୟୁ । ମୈଥିଳୀ ଭାଷାର ସେଇ ଆସନ୍ନ ମୁହୂର୍ତ୍ତ ଆସି ଉପସ୍ଥିତ । ଭାଷା ମରିବାର ଅନ୍ୟ ଗୋଟିଏ ଲକ୍ଷଣ ହେଲା, ଭାଷାର ମାଧ୍ୟାକର୍ଷଣ ଲୋପ । ସୂର୍ଯ୍ୟର ମାଧ୍ୟାକର୍ଷଣ ନଷ୍ଟ ହେବାର ଉପକ୍ରମ ହେଲେ, ଗ୍ରହ ଉପଗ୍ରହମାନେ ଯେପରି କେନ୍ଦ୍ରଚ୍ୟୁତ ବା କକ୍ଷଚ୍ୟୁତ ହୋଇଥାନ୍ତି, ସେହିପରି ଭାଷାର ମାଧ୍ୟାକର୍ଷଣ ଲୋପ ପାଇଲେ ଭାଷା ଖଣ୍ଡ ଖଣ୍ଡ ହୋଇଯାଏ । ସେ ଲକ୍ଷଣ ବି ଅଭାବ ନାହିଁ ମୈଥିଳୀ ଭାଷା କ୍ଷେତ୍ରରେ । ମୈଥିଳୀ ଭାଷାଠାରୁ ଅଲଗା ହେବାର ଚେଷ୍ଟାରେ ଏହି ଭାଷାର କେତୋଟି ଉପଭାଷା ନିଜକୁ ସ୍ୱାଧୀନ ଭାଷା କହି ଆନ୍ଦୋଳନ ଆରମ୍ଭ କରି ଦେଇଛନ୍ତି । ସେଥିରୁ ଗୋଟିଏ ଉପଭାଷା ହେଲା ଅଙ୍ଗିକା ଓ ଅନ୍ୟଟି ବଜ୍ଜିକା । ଏମାନେ ଆଉ ନିଜକୁ ମୈଥିଳୀ ଭାଷା କହିବାକୁ ରାଜି ନୁହନ୍ତି । ଆମ ଓଡ଼ିଆ ଭାଷା କ୍ଷେତ୍ରରେ ବି ଅନୁରୂପ ପରିସ୍ଥିତି ସୃଷ୍ଟି ହୋଇଛି । ସମ୍ବଲପୁରୀ ଉପଭାଷା ନିଜକୁ ଗୋଟିଏ ସ୍ୱାଧୀନ ଭାଷା ବୋଲି ଦାବି କରି ଓଡ଼ିଆ ଭାଷାଠାରୁ ଅଲଗା ହେବା ପାଇଁ ଆନ୍ଦୋଳନ ଆରମ୍ଭ କରିଦେଇଛି । ଅର୍ଥାତ୍ ଗୋଟିଏ ବିରାଟ ଭାଷାଭାଷୀ ଅଞ୍ଚଳ ଉପରେ ଓଡ଼ିଆ ଭାଷାର ଆଉ କର୍ତ୍ତୃତ୍ୱ ନାହିଁ । ଆଜି ଓଡ଼ିଆରୁ ସମ୍ବଲପୁରୀ ବାହାରିଯିବ ତ କାଲି ଯିବ ଆଉ ଗୋଟିଏ ଅଞ୍ଚଳ । ତା ଆରଦିନ ଆଉ ଗୋଟିଏ । ଆଜି ଯେଉଁ ଅଢ଼େଇ କୋଟିରୁ ଊର୍ଦ୍ଧ୍ୱ ଲୋକ ଓଡ଼ିଆ କହୁଛନ୍ତି ବୋଲି ଆମେ ଦାବି କରୁଛେ, ତାହା ମାତ୍ର କେଇ ଲକ୍ଷ ଲୋକଙ୍କ ଭାଷାରେ ପରିଣତ ହେବ । ଆଜି ମୈଥିଳୀ ଭାଷାର ସେ ଦୁରବସ୍ଥା । ଏହାର ଅକ୍ଷର ଚାଲିଯାଇଛି, ଏହାର ସାହିତ୍ୟ ଶୁଖିଯାଇଛି । ଏହାର କର୍ତ୍ତୃତ୍ୱ ଲୋପ ପାଇଛି । ଅନେକ ଲୋକଙ୍କର ଏହା ମାତୃଭାଷା ହୋଇଥିବା ସତ୍ତ୍ୱେ, ଏ ଭାଷାରେ ପ୍ରାଥମିକ ଶିକ୍ଷା ଦିଆ ହେଉନାହିଁ । ଗୋଟିଏ ଉନ୍ନତ ଭାଷାରୁ ଏହା ପରିଣତ ହୋଇଛି ଗୋଟିଏ ଉପଭାଷାରେ । ବର୍ତ୍ତମାନ ମୈଥିଳୀମାନେ ତାଙ୍କ ପୂର୍ବଭାଷାର ଜୀବନକୁ ଫେରାଇ ଆଣିବା ପାଇଁ ପାଟି କରିବା ଆରମ୍ଭ କରିଛନ୍ତି, କିନ୍ତୁ ଅଜଗରର ପେଟରୁ ହଜମ ହୋଇସାରିଥିବା ଜୀବନଟିକୁ ଉଦ୍ଧାର କରିବା ଯେପରି ଅସମ୍ଭବ, ସେହିପରି ହିନ୍ଦୀ ଗର୍ଭରୁ ମୈଥିଳୀକୁ ଉଦ୍ଧାର କରିବା ଅସମ୍ଭବ । ଆମେ ବି ସେହିପରି ଅଜଗରର ପେଟରେ ପଶିବାର ଅବସ୍ଥାରେ ପହଞ୍ଚିଛୁ । ନାହିରେ ତେଲ ପକାଇ ଶୋଇଛୁ ଖାଦକ ଆମର ବାସ୍ନା ପାଇସାରିଲାଣି । ସେ ଆଡ଼କୁ ଆମର ଖିଆଲ ନାହିଁ ।

ଗୋଟିଏ ଭାଷାର ପ୍ରକୃତ ସ୍ୱାସ୍ଥ୍ୟ ଜାଣିବା ପାଇଁ ଅନେକଗୁଡ଼ିଏ ପ୍ରଶ୍ନ ପଚରାଯାଇପାରେ, ଯେଉଁ ଉତ୍ତରରୁ ଜଣେ ଅଭିଜ୍ଞ ବ୍ୟକ୍ତି ପାଖରେ ତା'ର ଅବସ୍ଥା ବାରିହୋଇ ପଡ଼େ । କାଶରେ ଯଦି ରକ୍ତ ପଡ଼ୁଥାଏ, ଜର ହେଉଥାଏ, ଓଜନ କମିଯାଉଥାଏ, ଯେପରି ନିର୍ଦ୍ଦିଷ୍ଟ ରୋଗର ଲକ୍ଷଣ ହୋଇପାରେ, ଓଡ଼ିଆ ଭାଷାର ଶରୀରରେ ସେହିପରି ଦେଖାଦେଇଛି ବିପଜ୍ଜନକ ଲକ୍ଷଣ । ସେଥିପାଇଁ ସମୟରୁ ବ୍ୟବସ୍ଥା ନକଲେ ନେଡ଼ିଗୁଡ଼ କହୁଣୀକୁ ବୋହିଯିବ । ଏ ଜାତିର ଭାଷାକୁ ବଞ୍ଚାଇ ରଖିବା ପାଇଁ ଏ ଜାତିକୁ ସତର୍କ ରହିବାକୁ ପଡ଼ିବ । ଲଢ଼ିବାକୁ ପଡ଼ିବ । ପଇସା ଖର୍ଚ୍ଚ କରିବାକୁ ପଡ଼ିବ । ଭାଷା ଗୋଟିଏ ଜାତିର ଜୀବନ ନାଡିକା । ସେ ନାଡ଼ି ଯେତେ ଦିନ ଚାଲିବ,ଏ ଜାତି ବଞ୍ଚିରହିବ । ଯେଉଁଦିନ ସେ ନାଡ଼ି ବନ୍ଦ ହୋଇଯିବ, ତାହା ହେବ ସେ ଜାତିର ଶେଷ । ଓଡ଼ିଆ ଭାଷାର ନାଡ଼ି ବନ୍ଦ ହୋଇଯିବାର ଯେଉଁ ଲକ୍ଷଣମାନ ଦେଖାଦେଇଛି, ସେ କଥା ଭାଷା ବିଜ୍ଞାନ ବହୁଦିନରୁ ସୂଚାଇ ସାରିଲାଣି । ବର୍ତ୍ତମାନ ଏ ଜାତିର ଲୋକେ ଚେଷ୍ଟା କରିବେ କି ନାହିଁ ତାହା ସେମାନଙ୍କ ଉପରେ ନିର୍ଭର କରେ । ସେଥିପାଇଁ ଅନ୍ୟ ଲୋକେ ଆମକୁ ସାହାଯ୍ୟ କରିବାକୁ ଆସିବେ ନାହିଁ । ଆମ ନିଜକୁ ହିଁ ଲଢ଼ିବାକୁ ପଡ଼ିବ । ଯେଉଁମାନେ ଏ ଭାଷାର ଦୁରବସ୍ଥାକୁ ବୁଝିବା ପାଇଁ ନାରାଜ ଓ ନାନା ପ୍ରକାର ତୁଚ୍ଛା ଆଶ୍ୱାସନା ଦେଇ ଏ ଜାତିକୁ ଭଣ୍ଡୁଛନ୍ତି, ସେହିମାନେ ହିଁ ଏ ଜାତିର, ଏ ଭାଷାର ପ୍ରଧାନ ଶତ୍ରୁ । ସେମାନଙ୍କର ଅଦୂରଦର୍ଶିତା ଓ ଅନଭିଜ୍ଞତା ଏଥିପାଇଁ ଦାୟୀ ।

ଭାରତରେ ଛୋଟବଡ଼ ହୋଇ ବର୍ତ୍ତମାନ ଦୁଇଶହରୁ ବେଶୀ ଭାଷା ଚଳେ । ସେଥିରୁ ପ୍ରାୟ ଦୁଇ ତୃତୀୟାଂଶ ମରଣୋନ୍ମୁଖୀ । ଓଡ଼ିଆ ଭାଷା ବି ଏହି ବିପଦର ବଳୟ ଭିତରେ ରହିଛି । ଆମେ ଯେତେବେଳେ ଏହାର ସୂଚନା ଦେଲୁ କିଛି ଉତ୍ତେଜିତ ହୋଇପଡ଼ିଲେ

ଏବଂ ଯୁକ୍ତି ବାଢ଼ିଲେ ଯେ ଓଡ଼ିଆ ଭାଷା କେବେ ମରିବ ନାହିଁ। ଓଡ଼ିଆ ଭାଷା ପ୍ରତି କୌଣସି ବିପଦ ନାହିଁ। ତା'ର କାରଣ ହିସାବରେ ସେମାନେ କହିଲେ ଯେ ଓଡ଼ିଆ ଭାଷା ଗାଁ ଗଣ୍ଡା ବଣ ଜଙ୍ଗଲରେ ଲକ୍ଷ ଲକ୍ଷ ଲୋକଙ୍କ ଦ୍ୱାରା କଥିତ ହୋଇଥାଏ। ପୃଥିବୀରେ ଏପରି କୌଣସି ଶକ୍ତି ନାହିଁ, ଯେଉଁ ଶକ୍ତି ଏଇ ଅସଂଖ୍ୟ ଲୋକଙ୍କ ତୁଣ୍ଡରୁ ତାଙ୍କର ମାତୃଭାଷାକୁ କାଢ଼ିନେଇ ପାରିବ ଆଉ ଏଇ ଲୋକେ ଓଡ଼ିଆ ଭାଷାକୁ ବଞ୍ଚାଇ ରଖିବେ । ଆମେ ଏ କଥାକୁ ଅସ୍ୱୀକାର କରୁନାହୁଁ, ବସ୍ତୁତଃ ଆମର ଭୟ ହିଁ ସେୟା, ଅର୍ଥାତ ଆଉ କିଛି ବର୍ଷ ପରେ ଓଡ଼ିଆ ଭାଷା ସେହି ଗାଁ ଗଣ୍ଡାର ମଫସଲି ଲୋକ ଓ ବଣଜଙ୍ଗଲର ଆଦିବାସୀ ଲୋକଙ୍କ ଭାଷା ହୋଇ ରହିଯିବ । ତା' ଛଡ଼ା ଆମକୁ ଦୁଃଖର ସହିତ କହିବାକୁ ପଡ଼ୁଛି ଯେ, ଏହି ଅନଭିଜ୍ଞ ତଥା ଭାବପ୍ରବଣ ବ୍ୟକ୍ତିମାନେ ଆଧୁନିକ ପୃଥିବୀରେ ଭାଷା ମରିବା କଣ ତାହା ଠିକ୍ ଜାଣନ୍ତି ନାହିଁ । ଆଧୁନିକ ଯୁଗରେ ଭାଷା ମଲେ ଲୋକମାନଙ୍କ ତୁଣ୍ଡରୁ ଏହା ଲୋପ ପାଇଯାଏ ନାହିଁ । ଏହା ଜାତିର ବିଭିନ୍ନ ସାମାଜିକ ପରିସରରୁ ଲୋପ ପାଇଯାଏ। ଭାଷା କୁହାଯାଉ ନଥିବା ଏକ ପ୍ରକାରର ମୃତ୍ୟୁ। ଭାଷାକୁ କୁହାଇ ନଦେବା ଆଉ ଏକ ପ୍ରକାରର ମୃତ୍ୟୁ। ଦ୍ୱିତୀୟ ପ୍ରକାରଟି ଖାଲି ମୃତ୍ୟୁ ନୁହେଁ, ହତ୍ୟା। ଅର୍ଥାତ୍ ଭାଷାର ସାମାଜିକ ପରିସରଗୁଡ଼ିକୁ ଏପରି ଭାବେ ରୁନ୍ଧି ଦେବାକୁ ହେବ, ଯେପରି ସେ ଭାଷା ନିଜ ସମାଜଠାରୁ ବିଚ୍ଛିନ୍ନ ହୋଇପଡ଼ିବ। ଏହା ଶ୍ୱାସରୁଦ୍ଧ ଜନିତ ମୃତ୍ୟୁ-ଜୀବନ ମୃତ୍ୟୁ ସଙ୍ଗେ ସମାନ। ଏପରି ଘଟିଲେ ବୁଝିବାକୁ ହେବ ଯେ ଭାଷା କୋମା ଅବସ୍ଥାରେ । ଏହି ଅବସ୍ଥାରେ ମରିବା ବଞ୍ଚିବା ସମାନ। ବାନ୍ଧି ମାରିଲେ ଯାହା, ଧରିମାରିଲେ ସେୟା । ପରିଣତି ମୃତ୍ୟୁ ।

ପ୍ରଥମେ ସ୍ୱାଭାବିକ ଧରଣର ମୃତ୍ୟୁ ବିଷୟରେ ଦେଖାଯାଉ। ଆଣ୍ଡାମାନ ଦ୍ୱୀପପୁଞ୍ଜରେ ଓଙ୍ଗେ ନାମକ ଏକ ଛୋଟ ଆଦିବାସୀ ଗୋଷ୍ଠୀ ବସବାସ କରନ୍ତି । ସେମାନଙ୍କ ସଂଖ୍ୟା ବର୍ତ୍ତମାନ ମାତ୍ର ଶହେରୁ କିଛି ବେଶୀ। ଫଳରେ ସେମାନଙ୍କ ସଂଖ୍ୟା ବଢ଼ିବା ଅପେକ୍ଷା ଆସ୍ତେ ଆସ୍ତେ ଛିଡ଼ୁଛି । ଏପରି ସମୟ ଆସିବ ଯେତେବେଳେ ଏଇ ଗୋଷ୍ଠୀ ଆହୁରି ହ୍ରାସ ପାଇବାକୁ ଲାଗିବ, କାରଣ ସେମାନେ ସନ୍ତାନ ଜନ୍ମ କରିବାକୁ ଅକ୍ଷମ ହୋଇପଡ଼ିବେ। ଫଳରେ ଗୋଷ୍ଠୀଟିରେ ରହିବେ କିଛି ବୁଢ଼ାବୁଢ଼ୀ ଯେଉଁମାନେ ଆସ୍ତେ ଆସ୍ତେ ମରିବାକୁ ଆରମ୍ଭ କରିବେ । ଶେଷ ବୁଢା କି ବୁଢ଼ୀଟି ଯେଉଁଦିନ ମରିଯିବ ତାଙ୍କ ଭାଷାବି ସେଇଦିନ ମରିଯିବ । ଏହା ହେଲା ଗୋଟିଏ ଜାତି ଲୋପ ପାଇଯିବା ପରେ ସେଇ ଜାତିର ଭାଷାକୁ କହିବା ପାଇଁ ଆଉ କେହି ରହିବେ ନାହିଁ ଭାଷାର ମୃତ୍ୟୁ ଘଟିବ । ଏହି ସୂତ୍ରରେ ଆମେରିକାର ସହସ୍ରାଧିକ ଆଦିବାସୀ ଗୋଷ୍ଠୀଙ୍କର ଭାଷା ଲୋପ ପାଇଯାଇଛି। ଅଷ୍ଟ୍ରେଲିଆ, ନ୍ୟୁଜିଲାଣ୍ଡ, କାନଡ଼ା, ଦକ୍ଷିଣ ଆମେରିକା, ଭାରତ ମହାସାଗରର ଦ୍ୱୀପପୁଞ୍ଜରେ ମଧ୍ୟ ଠିକ୍ ସେଇ ଅବସ୍ଥା। ଏସବୁ ସ୍ଥାନରେ ବହୁ ଆଦିମ ଜାତି ଲୋପ ପାଇଯିବା ଯୋଗୁ ସେମାନଙ୍କ ଭାଷା ବି ଚିରଦିନ ପାଇଁ ଧରାପୃଷ୍ଠରୁ ଲୋପ ପାଇଯାଇଛି । ସେହି ଏକ କାରଣରୁ ଆମ ଓଡ଼ିଶାରେ ବି କିଛି ଆଦିବାସୀ ଲୋପ ପାଇଯିବାର ଯଥେଷ୍ଟ ସମ୍ଭାବନା ରହିଛି । କୋରାପୁଟର ଡ଼ିଡେଇ, ପାରେଙ୍ଗା, ଗଦବା କେନ୍ଦୁଝରର ଜୁଆଙ୍ଗ, ସୁନ୍ଦରଗଡ଼ର କିଷାନ ମଧ୍ୟ ଆସି ଜନସାଂଖ୍ୟିକ ସୀମାରେଖାର ସଙ୍କଟ ବିନ୍ଦୁରେ ପହଞ୍ଚିଛନ୍ତି । ମାତ୍ର କେଇ ହଜାର ଲୋକଙ୍କର ଏଇ ଗୋଷ୍ଠୀଗୁଡ଼ିକ ଯେତିକି ଯେତିକି ଛିଡ଼ିବେ ସେମାନଙ୍କ ଭାଷା ମଧ୍ୟ ସେତିକି ସେତିକି ଲୋପ ପାଇ ଚାଲିବ ଅନ୍ତିମ ମୁହୂର୍ତ୍ତ ପର୍ଯ୍ୟନ୍ତ। ସେ ଭାଷା ଗୁଡ଼ିକ ଚିରଦିନ ପାଇଁ ମାନବ ଜାତିର ମାନସପଟରୁ ଲିଭିଯିବେ। ଭାଷାକୁ ନେଇ ଯେପରି ଜାତି, ଜାତିକୁ ନେଇ ସେହିପରି ଭାଷା । ଜାତି ଲୋପ ପାଇଗଲେ ଭାଷା ଲୋପ ପାଇଯିବା ଅବଶ୍ୟମ୍ଭାବୀ। ଏବେ ଓଡ଼ିଶାର ସଂସ୍କୃତ ପ୍ରେମୀମାନେ ଲୋକଭାଷା ନାମରେ ଏକ ମୃତ ଭାଷା ପାଇଁ ଜାତିଟିଏ ଗଢ଼ିବାରେ ଲାଗିପଡ଼ିଛନ୍ତି। ସ୍କୁଲ୍, କଲେଜ, ଥାନା, କଚେରୀ, ସବୁଠି ଏବେ ଏ ପଣ୍ଡିତମାନେ ସଂସ୍କୃତ ଭାଷାରେ କଥା କହିବାକୁ, ବକ୍ତୃତା ଦେବାକୁ ପିଲାମାନଙ୍କୁ ଅଭ୍ୟାସ କରାଉଛନ୍ତି। ସେମାନଙ୍କର ବିଶ୍ୱାସ ଏ ପିଲାମାନେ ଦିନେ ବଡ଼ ହେବେ, ଘର କରିବେ, ଆଉ ନିଜର ପରିଚୟ ଦେବାକୁ ଯାଇ କହିବେ ଓତ୍ରହଂ। ଗୋଟିଏ ନୂଆ ଜାତି ତିଆରି ହେବ, ଯାହାର ମାତୃଭାଷା ହେବ ସଂସ୍କୃତ। ସଂସ୍କୃତ ଯୁଗରେ ମଧ୍ୟ ଏହା ସମ୍ଭବ ହୋଇ ନଥିଲା । କାରଣ ଉଚ୍ଚବର୍ଣ୍ଣର ପୁରୁଷମାନେ ଯେତେବେଳେ ସଂସ୍କୃତରେ କହୁଥିଲେ, ନାରୀମାନେ ସ୍ୱଚ୍ଛନ୍ଦରେ ପ୍ରାକୃତ ବ୍ୟବହାର କରୁଥିଲେ। ତେଣୁ ସଂସ୍କୃତ ମାତୃଭାଷା ହୋଇ ରହିପାରିଲା ନାହିଁ ଏବଂ ତାହା ହିଁ ହେଲା ଏହାର ମୃତ୍ୟୁର କାରଣ। ଗୋଟିଏ ଭାଷା ଲୋକଭାଷା ହେବାକୁ ହେଲେ – ମାର ଭାଷା ହେବା ଆବଶ୍ୟକୀୟ। ସଦ୍ୟଜାତ ସନ୍ତାନ ପାଇଁ ମା'ର କ୍ଷୀରଠାରୁ ବଳି ଯେପରି ଉପାଦେୟ କିଛି ନାହିଁ, ଗୋଟିଏ ଜାତି ପାଇଁ ମା'ର ଭାଷାଠାରୁ ବଳି ଭାଷା ନାହିଁ । ଏହି ଭାଷା ଦ୍ୱାରା ହିଁ ଶିଶୁର ବୌଦ୍ଧିକ ମାନସିକତାର ମୂଳଦୁଆ ପଡ଼ିଥାଏ। ମାତୃଭାଷାର ମୃତ୍ୟୁ ଘଟିଲେ ଗୋଟିଏ ଜାତିର ମୃତ୍ୟୁ ଘଟେ।

ଅନ୍ୟ ପ୍ରକାରର ମୃତ୍ୟୁ ହେଲା ଶ୍ୱାସରୁଦ୍ଧ ଜନିତ। ଗୋଟିଏ ଭାଷା ଉକ୍ତ ସମାଜର ବିଭିନ୍ନ ସାମାଜିକ ପରିସରରେ ବ୍ୟବହୃତ

ହୋଇଥାଏ। ଯେତିକି ବିଭିନ୍ନ ସାମାଜିକ ପରିସରରେ ଗୋଟିଏ ଭାଷା ବ୍ୟବହୃତ ହେବ, ସେତିକି ଜୀବନୀଶକ୍ତି ତା'ର ବଢ଼ିବ। ସାମାଜିକ ପରିସରଗୁଡ଼ିକରୁ ଏହା ଯେତିକି ଯେତିକି ହଟିଯିବ, ସେତିକି ସେତିକି ଏହାର ଦମ୍ ବନ୍ଦ ହୋଇଯିବ । ଘର ଭିତରେ ଥିବା ଲୋକଙ୍କର ଶ୍ୱାସରୁଦ୍ଧ ହେବ। ଗୋଟିଏ ବନ୍ଦ କୋଠରୀ ଭିତରେ ଆପଣ ଚିଲାଉଥିବେ, କେହି ଶୁଣି ପାରୁନଥିବେ ଆପଣଙ୍କ କଥା, ଶୁଣିଲେ ବି କେହିମୂଲ୍ୟ ଦେବେନି ଆପଣଙ୍କ ଅବୋଧ କଥାର। କାରଣ ସେସବୁ କ୍ଷେତ୍ରରେ ଓଡ଼ିଆ ଭାଷାରେ କହିବା ଅସମ୍ମାନଜନକ, ଅପାରଗତା ଅବାଞ୍ଛିତ ବା ଆଇନତଃ ନିଷିଦ୍ଧ। ବର୍ତ୍ତମାନ ଆମ ଓଡ଼ିଆ ସାମାଜିକ ପରିସରଗୁଡ଼ିକୁ ନେଇ ଦେଖାଯାଉ, ଗୋଟିଏ ସାମାନ୍ୟ ଉଦାହରଣ ଦେଇ। ଆଜିର ସଭ୍ୟତାରେ ଟେଲିଭିଜନ ଏକ ଅପରିହାର୍ଯ୍ୟ ବସ୍ତୁ । ଯେତିକି ବେଶୀ ସଭ୍ୟଦେଶକୁ ଯିବ, ସେତିକି ବେଶି ଦେଖିବ ଏ ତଥାକଥିତ ଇଡ଼ିଅଟ ବକ୍ସବା କଳମୁକୁରର କାରସାଦି । ଉନ୍ନତ ଦେଶମାନଙ୍କରେ ଶହ ଶହ ଚ୍ୟାନେଲ୍‌ରେ ଅହୋରାତ୍ର ଟେଲିଭିଜନ ଚାଲିଛି। ଏୟାରପୋର୍ଟଠାରୁ ଆରମ୍ଭ କରି ହସ୍ପିଟାଲ ପର୍ଯ୍ୟନ୍ତ ଧାଡ଼ି ଧାଡ଼ି ଚେୟାର କଡ଼ରେ ଟେଲିଭିଜନ ଖଞ୍ଜା ହୋଇଛି। ଏ ଟେଲିଭିଜନରେ ଆପଣ ଖାଲି ଛବି ଦେଖୁନାହାଁନ୍ତି, କଥା ବି ଶୁଣୁଛନ୍ତି। ବିଭିନ୍ନ ପ୍ରକାର କଥା ଶୁଣୁଛନ୍ତି ବିଭିନ୍ନ ବିଷୟରେ। ବକ୍ତୃତା, ତର୍କ, ଆଇନ୍, ଆଲୋଚନା, କବିତା, ସମୀକ୍ଷା, ନାଟକ ଗାନ, ଗାଳି, ରୂପକଥା, କମିକ୍, କଳା, ଦର୍ଶନ,ବ୍ୟଙ୍ଗ, ଉପଦେଶ ଧର୍ମ, ରଣନୀତି, କୂଟନୀତି, ରାଜନୀତି, ବ୍ୟବସାୟ, କୃଷି, ଚିକିତ୍ସା, ସ୍ୱାସ୍ଥ୍ୟରକ୍ଷା, ରାନ୍ଧଣା, ରୂପସଜ୍ଜା, ଫେଶନ୍, ଖେଳ, ସମ୍ବାଦ, ଭ୍ରମଣ, ପ୍ରୋପାଗଣ୍ଡା, ପ୍ରଚାର, ବିଜ୍ଞାପନ, ବାଣିଜ୍ୟ, ପ୍ରକୃତି, ପରିବେଶ, ଜନ୍ମ, ମରଣ, ରୋଗ, ଜରା, ବିଳାସ, ବ୍ୟାୟାମ, ବିଶ୍ରାମ ପରି ଅଗଣିତ ବିଷୟରେ ଅଜାଡ଼ି ହୋଇପଡ଼ୁଛି । ଭାଷା ଚାରିଆଡ଼କୁ ଓଟାରି ହେଉଛି । କୋଟି କୋଟି ନୂଆଁ ପୁରୁଣା ଶବ୍ଦ ବାକ୍ୟ, ବିଶେଷଣ, ଅବ୍ୟୟ, ଉପମା, ଅଳଙ୍କାର, ଅନୁପ୍ରାସ, ଗ୍ରାମ୍ୟ, ବିଙ୍ଗ, ବିଦଗ୍ଧ କଥା ଭାଷା ଆପଣଙ୍କର ଓ ଜାତିର ସେବାରେ ନିବିଷ୍ଟ। ଆପଣଙ୍କୁ ଜ୍ଞାନଦେଉଛି, ଆପଣଙ୍କ ମନୋରଂଜନ କରୁଛି, ଉଚ୍ଚାଟ କରୁଛି, ହସାଉଛି କନ୍ଦାଉଛି । ପରୋକ୍ଷ ଭାବେ ହେଲେ ବି ସମାଜର ସମସ୍ତ ପରିସର ସହିତ ସେ ବ୍ୟକ୍ତିକୁ ଜଡ଼ାଇ କରି ରଖିଛି । ଆଧୁନିକ ସଭ୍ୟତାରେ ଭାଷାର ପ୍ରସାର ଓ ଜୀବନୀଶକ୍ତି ପାଇଁ ଟେଲିଭିଜନ ଅପରିହାର୍ଯ୍ୟ। ଶହ ଶହ ଚ୍ୟାନେଲରେ ଚବିଶ ଘଣ୍ଟା ଭାଷା ମୁଷଳଧାରାରେ ବର୍ଷୁଛି । ଏପରି ଭାଷାଟିଏ ଯଦି ଆପଣଙ୍କର ହୋଇଥାଏ, ଗର୍ବ କରିବାର ଯଥେଷ୍ଟ କାରଣ ଅଛି। କିନ୍ତୁ ଆପଣଙ୍କ ଭାଷା ଯଦି ଟେଲିଭିଜନରୁ ଶୁଣାଯାଉ ନଥାଏ ?

ଆପଣ କ୍ରିକେଟ୍ ଫ୍ୟାନ ହୋଇଥାନ୍ତୁ ପଛେ, ତେନ୍ଦୁଲକରଙ୍କୁ ଟେଲିଭିଜନ ପର୍ଦ୍ଦାରେ ନିଶ୍ଚୟ ଭେଟିଥିବେ। ତେବେ ଯେତେଥର ଆପଣ ଦେଖିଛନ୍ତି ତାଙ୍କୁ ଖାଲି ଖେଳୁଥିବା ବେଳେ ନୁହେଁ, ଅନ୍ୟ ସଂକ୍ରାନ୍ତରେ ମଧ୍ୟ ଯଥା ସାକ୍ଷାତକାର, ସମ୍ବାଦ, ବିଜ୍ଞାପନ, ଇତ୍ୟାଦିରେ କେଉଁଠି ହେଲେ ତେନ୍ଦୁଲକରଙ୍କୁ ଓଡ଼ିଆ କହୁଥିବାର ଆପଣ ଶୁଣି ନାହାଁନ୍ତି। ଆପଣ ଭଲ କରି ବୁଝିଛନ୍ତିଯେ ସେ ଓଡ଼ିଆ ନୁହନ୍ତି। ତାଙ୍କଠାରୁ ଓଡ଼ିଆ ଭାଷା ଆଶା କରିବା ବୃଥା । କିନ୍ତୁ ଆପଣ ଯେଉଁ ଦିଅଁ ଦେବତାଙ୍କୁ ପୂଜା କରନ୍ତି ସେମାନେ ସବୁ ଓଡ଼ିଆ ଜାଣନ୍ତି ନାହିଁ। ଓଡ଼ିଆମାନଙ୍କର ଯେତେ ଦିଅଁ ସମସ୍ତେ କି ଅଣଓଡ଼ିଆ ? ତେବେ ଟେଲିଭିଜନରେ ରାମ, କୃଷ୍ଣ, ହନୁମାନ, ଶିବ ଯେତେବେଳେ ଆସନ୍ତି, କେହି କାହିଁକି ଓଡ଼ିଆରେ କଥାବାର୍ତ୍ତା ହୁଅନ୍ତି ନାହିଁ ? ସେହି ଦିଅଁମାନେ ଯେତେବେଳେ ଟେଲିଭିଜନରେ ତାମିଲନାଡୁ ଯାଇଛନ୍ତି, ସେଠି ସେଠା ଭାଷାରେ କହୁଛନ୍ତି, ଯେତେବେଳେ କଲିକତା ଯାଉଛନ୍ତି, ସେଠା ଭାଷାରେ କହୁଛନ୍ତି। କିନ୍ତୁ ଯେତେବେଳେ ଓଡ଼ିଶାକୁ ଆସୁଛନ୍ତି, ସେତେବେଳେ ଆମ ଏଠା ଭାଷାରେ କହୁନାହାନ୍ତି କାହିଁକି ? ଏ କଥାର ଆପଣ ଉତ୍ତର ଦେବେ ଯେ ଛବିଟି ଓଡ଼ିଆରେ ଡ଼ବିଂ ହୋଇନାହିଁ କାହିଁକି ? ତାମିଲ, ବଙ୍ଗଳାରେ ଯଦି ହୋଇପାରୁଛି ଓଡ଼ିଆରେ ହେଉନାହିଁ କାହିଁକି ? ଏହାଦ୍ୱାରା ଓଡ଼ିଆମାନଙ୍କ ସ୍ୱାଭିମାନରେ ଆଞ୍ଚ ନ ଲାଗିଲେ ନଲାଗୁ ପଛେ କିନ୍ତୁ ଏଇ ମିଠା ବିଷ ବଟିକା ଓଡ଼ିଆ ସମାଜର ମାନସିକତାକୁ କି ଭାବେ ଉପଦ୍ରୁତ କରୁଛି, ତା'ର ତୁଳନା ନାହିଁ। ଭାବନ୍ତୁ ଗାଁ ଗହଳରେ ଦେଖୁଥିବା ସାତ ଆଠ ବର୍ଷର ଓଡ଼ିଆ ପିଲା ଯେ ଦିନ ପରେ ଦିନ ଦେଖୁଛି, ଯେତେ ଦିଅଁ ଦେବତା ବାହାରୁଛନ୍ତି ଟେଲିଭିଜନରେ ଜଣେ ବି ସେଥିରୁ ଓଡ଼ିଆରେ କୁହନ୍ତି ନାହିଁ । ତାର ଧାରଣା ବଦ୍ଧମୂଳ ହେଉଛି ଯେ ଦିଅଁମାନେ ଓଡ଼ିଆ କହନ୍ତି ନାହିଁ। ସବୁ ଦେବତାଙ୍କ ଭାଷା ହିନ୍ଦୀ। ଯେମିତି ଆମେ ଭାବୁଥିଲେ, ସାହେବ ମାତ୍ରେ, ଗୋରା ହୁଅନ୍ତୁ କି କଳା, ସେମାନେ ସମସ୍ତେ ଇଂରାଜୀରେ କଥା କୁହନ୍ତି । ସେଥିପାଇଁ ଇଂରାଜୀ ଭାଷା ଭାରତରେ ହୋଇଥିଲା ସର୍ବଶ୍ରେଷ୍ଠ ସମ୍ମାନସ୍ପଦ ଭାଷା ଏବେ ବି ଅଛି । ଇଂରେଜୀ ପ୍ରତି ଏ ହୀନମନ୍ୟତା ଭାରତୀୟମାନଙ୍କ ରକ୍ତରେ ମିଶିଯାଇଛି । ବର୍ତ୍ତମାନ ଚେଷ୍ଟା, ଶାବଳ ଲାଗିଛି ଏ ଭାଷାକୁ ଭାରତରୁ ତଡ଼ିବା ପାଇଁ। ଭାରତରେ ନୂଆ ଶାସକ ଗୋଷ୍ଠୀ ତିଆରି ହୋଇଛନ୍ତି । ନୂଆ ଭାଷା ଆସିଛି। ସାହେବମାନଙ୍କ ଜାଗାରେ ଆସିଛନ୍ତି ବେକରେ ଚାଦର ପକା ଖଦଡ଼ି ନେତା। କିନ୍ତୁ ଓଡ଼ିଆ ଭାଷା ଯେଉଁଠିକି ସେଇଠି। ଏଇ ସଂକ୍ରାନ୍ତରେ ଗୋଟିଏ ଗପ ମନେ ପଡ଼ୁଛି। ଜାଣିଥିବେ, ଆମେରିକାରେ ଗୋରାମାନେ

ଉପନିବେଶ ପ୍ରତିଷ୍ଠା କରିବା ପୂର୍ବରୁ ଆଦିବାସୀ ଲୋହିତ ଭାରତୀୟମାନେ ସେଠାରେ ବାସ କରୁଥିଲେ । ଗୋରାମାନଙ୍କର ଆମେରିକାରେ ବସତି ସ୍ଥାପନ ଯେତିକି ବଢ଼ିଲା, ସ୍ଥାନୀୟ ଆଦିବାସୀମାନଙ୍କ ସହିତ ସେମାନଙ୍କର ସଂଘର୍ଷ ସେତିକି ବଢ଼ିଲା । ଆଦିବାସୀମାନଙ୍କ ସହିତ ଏହି କନ୍ଦଳ ଏତେ ସାଧାରଣ ହୋଇଗଲା ଯେ, ସେ ସବୁ ବିଷୟକୁ ନେଇ ବହୁ ଚଳଚିତ୍ର ତିଆରି ହେଲା । ହଲିଉଡ଼ର ଏହି କାଉ-ବୟ ଛବି ସବୁ ଆପଣ ଦେଖିଥିବେ । ସବୁ ଛବିର ମୁଖ୍ୟ ବିଷୟବସ୍ତୁ ଥିଲା ଗୋରାମାନଙ୍କ ସହିତ ଲୋହିତ ଭାରତୀୟମାନଙ୍କ ଯୁଦ୍ଧ ଓ ଶେଷରେ ଲୋହିତ ଭାରତୀୟମାନଙ୍କର ପରାସ୍ତ । ଗୋରାମାନେ, ବିଶେଷକରି ତାଙ୍କ ପିଲାମାନେ ଏ ଛବି ସବୁ ଦେଖି ଖୁବ୍ ଆନନ୍ଦ ପାଉଥିଲେ ଓ ଗର୍ବ କରୁଥିଲେ । ଲୋହିତ ଭାରତୀୟ ପିଲାଏ ବି ଏ ଛବି ଦେଖୁଥିଲେ । ଥରେ ଗୋଟିଏ ଲୋହିତ ଭାରତୀୟ ପିଲା ଏ ଛବି ଦେଖି ତା ବାପାକୁ ପଚାରିଲା -ବାପା ମୁଁ ସବୁ ଛବିରେ ଦେଖୁଛି ଗୋରାମାନେ ହିଁ ଯୁଦ୍ଧରେ ଜିତୁଛନ୍ତି । ଆମେମାନେ କ'ଣ ଥରେ ହେଲେ ବି ଏ ଯୁଦ୍ଧରେ ଜିତି ନଥିଲୁ ? ସେଇ ଏକ ହୀନମନ୍ୟତା ସୃଷ୍ଟି ହେଉଥିବ, ଆମ ଓଡ଼ିଆ ପିଲାମାନଙ୍କ ଭିତରେ ତାଙ୍କ ନିଜ ଭାଷା ବିଷୟରେ । ସେମାନେ ଧରିନେଇଛନ୍ତି ତାଙ୍କ ଭାଷାରେ କେହି କଥା କୁହନ୍ତି ନାହିଁ । ଯେତେ ବଡ଼ ବଡ଼ ନେତା, ମନ୍ତ୍ରୀ, ପଦାଧିକାରୀ, କବି, ଲେଖକ, ଖେଳାଳି, ଡାକ୍ତର, ଅଭିନେତା, ବ୍ୟବସାୟୀ, ଓକିଲ, ଅଧ୍ୟାପକ, ଏପରିକି ଦିଅଁ ଦେବତାକୁ ସେ ଦେଖୁଛନ୍ତି ଦୂରଦର୍ଶନରେ ବା ସିନେମାରେ କେହି ଜଣେ ବି ଓଡ଼ିଆରେ କଥା କହୁନାହାଁନ୍ତି । ଏ ଅବସ୍ଥା ଆମ ପିଲାମାନଙ୍କର ଆତ୍ମ ବିଶ୍ୱାସକୁ ଭାଙ୍ଗି ଦେଇଛି । ତା' ମନରେ ଧାରଣା ସୃଷ୍ଟି କରୁଛି ଯେ, ତା ନିଜ ମାତୃଭାଷା ବଳରେ ସେ ମଣିଷ ହୋଇପାରିବ ନାହିଁ । ତାକୁ ଅନ୍ୟ ଲୋକଙ୍କ କଥା ଶୁଣିବାକୁ ପଡ଼ିବ- ସେ ଭାଷା ଇଂରାଜୀ ହେଉ ବା ହିନ୍ଦୀ । ଏହି ସତ୍ୟତା କାରଣରୁ ହିଁ ଓଡ଼ିଆମାନେ ଆଗତୁରା ଅନ୍ୟ ଲୋକଙ୍କ ଭାଷାରେ ପାଣ୍ଡିତ୍ୟ ଦେଖାଇବାକୁ ଚେଷ୍ଟା କରନ୍ତି, ନିଜ ଭାଷାରେ ନୁହେଁ । ଭୁଲଭାଲ କରି ପଛେ ହେଉ ପୁରୀ ପଣ୍ଡାମାନଙ୍କ ପରି ସେମାନେ ବଙ୍ଗାଳୀଙ୍କ ସାଙ୍ଗରେ ବଙ୍ଗଳାରେ ହିନ୍ଦୁସ୍ତାନୀଙ୍କ ସାଙ୍ଗରେ ହିନ୍ଦୀରେ ତେଲୁଗୁଙ୍କ ସଙ୍ଗରେ ନିଜ ପଟରୁ ହିଁ ଆରମ୍ଭ କରିଦେବେ । ଯେଉଁ ମୁଷ୍ଟିମେୟ ଓଡ଼ିଆ କିଛି ଖ୍ୟାତି ଅର୍ଜନ କରିଛନ୍ତି, ସେମାନେ ବି ନିଜ ଭାଷାରେ କଥା କହିବାକୁ କୁଣ୍ଠାବୋଧ କରନ୍ତି କାଳେ ଓଡ଼ିଆ ବୋଲି ଧରାପଡ଼ିଯିବେ । ଏହି ଘଡ଼ିସନ୍ଧିରେ ଆଜି ଭାଷା ପ୍ରସାରର ସବୁ ମାଧ୍ୟମଗୁଡ଼ିକ ଅନ୍ୟ ଭାଷା ଦ୍ୱାରା କରାୟତ୍ତ । ଦୂରଦର୍ଶନ, ଆକାଶବାଣୀ, ସିନେମା, କ୍ୟାସେଟ୍ ମାଧ୍ୟମରେ ଅନ୍ୟଭାଷାମାନେ ଆମ ଭାଷାର କଣ୍ଠରୋଧ କରି ଦେଉଛନ୍ତି । ଓଡ଼ିଆ ଭାଷା ଓଡ଼ିଆ ସମାଜରେ ପହଞ୍ଚିବାର ବାଟ ନାହିଁ । ଆପଣ ଅବଶ୍ୟ କହିପାରନ୍ତି ଦୂରଦର୍ଶନ ଆକାଶବାଣୀର କାମ ନୁହେଁ ଭାଷା ପ୍ରଚାର କରିବା । ସତ ଏ ସାଧନାଗୁଡ଼ିକ ଅନ୍ୟାନ୍ୟ ଗୁରୁତ୍ୱପୂର୍ଣ୍ଣ କାମରେ ନିୟୋଜିତ । ତେଣୁ ଯେଉଁ ଭାଷାରେ ହେଉ ପଛେ ସେମାନେ ଲୋକଙ୍କ ପାଖରେ ପହଞ୍ଚିଲେ ହେଲା ଆଉ ଯେହେତୁ ଓଡ଼ିଆମାନଙ୍କର ପୃଥିବୀର ସବୁ ଭାଷା ପ୍ରତି ହାର୍ଦ୍ଦିକତା ଅଛି ଓ ସେମାନେ ଏକ ଉଦାର ଜାତି ତେଣୁ ସବୁ ଭାଷା ତାଙ୍କ ପାଇଁ ସମାନ । ଆମର ଧର୍ମକର୍ମ ସଂସ୍କୃତରେ ଯଦିଓ ଆମର ପୂର୍ବସୂରୀମାନେ ବହୁ କଷ୍ଟ ସ୍ୱୀକାର କରି ଏ ଜାତି ପାଇଁ ଓଡ଼ିଆରେ ରାମାୟଣ ମହାଭାରତ ଲେଖିଯାଇଥିଲେ । ଏବେ ଆମ ଲୋକେ ଦାଣ୍ଡିରାମାୟଣକୁ ନାକ ଟେକୁଛନ୍ତି । ଗାଁ ଗାଁରେ ରାମ ଚରିତ ମାନସରେ ପ୍ରବଚନ ଦିଆହେଉଛି । ଆଗେ ସାହି ଦୋସାଲାରେ ରାତି ରାତି ଧରି ରାମଲିଳା ହେଉଥିଲା, ଏବେ ମାସ ମାସ ଧରି ଆମେ ହିନ୍ଦୀରେ ରାମାୟଣ ଦେଖୁଛୁ । ଆଗେ ଭକ୍ତି ସଙ୍ଗୀତ କହିଲେ ନିମାଇ ହରି ଚନ୍ଦନ, ଦୀନକୃଷ୍ଣ, ଗୋପାଳକୃଷ୍ଣ, ବନମାଳୀଙ୍କୁ ବୋଲୁଛନ୍ତି । ଏବେ ଘରେ ଘରେ ପଙ୍କଜ ଉଧାସ କି ଅନୁପ ଜଲୋଟାଙ୍କ କ୍ୟାସେଟ୍ ବାଜୁଛି । ଆମ ଧର୍ମ କର୍ମ ପୂଜା ଆରାଧନା ସବୁ ଠିକ୍ ଚାଲିଛି ଆଗପରି । ଖାଲି ଏ ସବୁ ଓଡ଼ିଆରେ ହେଉନାହିଁ, ତେଣୁ ଓଡ଼ିଆ ଭାଷା ମରିଯାଉଛି । ପ୍ରସାରର ସବୁ ମାଧ୍ୟମ ଗୁଡ଼ିକୁ ଯଥା -ଟେଲିଭିଜନ ,ରେଡ଼ିଓ , ସିନେମା, କ୍ୟାସେଟ୍ ଯାହା ଜରିଆରେ ଓଡ଼ିଆ ଭାଷା କୋଟି କୋଟି ଲୋକଙ୍କର ପାଖରେ ପହଞ୍ଚିପାରନ୍ତା ସେ ସବୁ ଉପାୟ ଗୁଡ଼ିକୁ ଅନ୍ୟ ଭାଷାରେ ଜାମ୍ କରିଦିଆଯାଇଛି । ଘରୋଇ ଗାଉଁଲି କଥା ଛଡ଼ା ଲୋକେ ଆଉ ଶୁଣୁନାହାଁନ୍ତି ଉନ୍ନତ ଓଡ଼ିଆ ଭାଷା । ଯେଉଁ ପରିମାଣରେ ଯେଉଁ ପ୍ରକାରରେ ଓଡ଼ିଆ ଭାଷା ଏ ସମାଜରେ କୁହାଯିବାର କଥା, ତାହା କୁହାଯାଇ ପାରୁ ନାହିଁ । ଆମ ଭାଷାକୁ ଆମଠାରୁ ଛଡ଼ାଇ ନିଆ ହେଉଛି । ଆମର କଲେଜ, ବିଶ୍ୱବିଦ୍ୟାଳୟରେ ଅଲଗା ଭାଷା, ଆମ ଅଫିସ ଦପ୍ତରରେ ଅଲଗା ଭାଷା, ଆମ ପୂଜା ପ୍ରାର୍ଥନାରେ ଅଲଗା ଭାଷା । ମାତୃ ଭାଷାର ଏଇ ଅବରୋଧ ତା'ର ମୃତ୍ୟୁର ପଥ ପରିଷ୍କାର କରିଦେଉଛି । ଓଡ଼ିଆ ଭାଷା ଲୋକଙ୍କ ପାଖରେ ପହଞ୍ଚୁ ନାହିଁ । ଓଡ଼ିଆ ଭାଷାର ଫାଶ ଫିଟିଯାଇଛି ଓଡ଼ିଆମାନଙ୍କ ଉପରୁ । ଯେଉଁ ଭାଷା ଗତ ଦେଢ଼ହଜାର ବର୍ଷ ଧରି ଆମକୁ ଗୋଟିଏ ସୂତ୍ରରେ ବାନ୍ଧି ରଖିଥିଲା, ସେ ଗଣ୍ଠି ଆମରି ଆଖି ଆଗରେ ହୁଗୁଳା ହୋଇଯାଇଛି । ଆମରି ଆଖି ଆଗରେ ମେଦିନୀପୁର ଓଡ଼ିଆଏ ବଙ୍ଗାଳୀ ହୋଇଗଲେ । ଏବେ ପଶ୍ଚିମା

ଅଞ୍ଚଳ ଲୋକେ ପାଟିକରୁଛନ୍ତି ତାଙ୍କ ଭାଷା ଓଡ଼ିଆ ନୁହେଁ ବୋଲି, କାଲି ଅନ୍ୟମାନେ ପାଟି କରିବେ। ଏକ ମାତ୍ର ଭାଷା ହିଁ ଆମକୁ ବାନ୍ଧି ରଖିଥିଲା। ସେ ଭାଷା ହେଉଛି ଓଡ଼ିଆ ଜାତିର ଭାଷା ଓଡ଼ିଆ। ସେ ଭାଷା ଆଜି ତାକତହୀନ ହୋଇ ପଡ଼ିଛି ଆମ ଲୋକଙ୍କ ଅବହେଳାରୁ ଓ ଅନ୍ୟମାନଙ୍କ ଦୂରଭିସନ୍ଧିରୁ। ଅନ୍ୟ ଭାଷାମାନେ ଆମ ଘରେ ପଶି ଆମ ଭାଷାକୁ ପଙ୍ଗୁ କରିଦେଉଛନ୍ତି। ସୂକ୍ଷ୍ମରେ କହିଲେ ଓଡ଼ିଆ ଭାଷା ପର୍ଯ୍ୟାପ୍ତ ପରିମାଣରେ ଓଡ଼ିଆଙ୍କ ପାଖରେ ପହଞ୍ଚି ପାରୁନାହିଁ। ଏହାର ସବୁ ପ୍ରବେଶ ପଥକୁ ରୁନ୍ଧି ଦିଆ ହୋଇଛି। ଓଡ଼ିଆ ଭାଷା ପଙ୍ଗୁ ହୋଇଯାଇଛି।

ଭାଷାର ଅନ୍ୟ ଗୋଟିଏ କବାଟ ହେଉଛି ସାହିତ୍ୟ। ସର୍ବସାଧାରଣରେ ବିଶ୍ୱାସ ଯେ ଭାଷାମାନେ ହିଁ ସାହିତ୍ୟ। ବିଶ୍ୱବିଦ୍ୟାଳୟ ସ୍ତରରେ ବି ଏହି ଧାରଣା । ତା'ନହେଲେ ବିଶୁଦ୍ଧ ଓଡ଼ିଆ ସାହିତ୍ୟ ବିଭାଗକୁ କାହିଁକି କୁହାଯାଆନ୍ତା ଓଡ଼ିଆ ଭାଷା ସାହିତ୍ୟ ବିଭାଗ। ଓଡ଼ିଆ ଭାଷା ଉପରେ କି କାମ ହେଉଛି ସେଠି ? କିମ୍ବା ଓଡ଼ିଆ ଭାଷା କି ଅବଦାନ ଏ ବିଭାଗ ଗୁଡ଼ିକର ? ସେଠି ଭାଷା ଅଧ୍ୟୟନ କହିଲେ କେଉଁ ଶବ୍ଦ ଟି କେଉଁ ଶବ୍ଦ ରୁ ଆସିଛି ତା'ର ଏକ ଅଧାପନ୍ତରିଆ, ଅବୈଜ୍ଞାନିକ, ହାସ୍ୟକର ଚର୍ଚ୍ଚା। କେଉଁ ଶବ୍ଦ ରୁ କେଉଁ ଓଡ଼ିଆ ଶବ୍ଦ ଆସିଛି ତା'ର କି ସଂପର୍କ ଅଛି ବର୍ତ୍ତମାନ ଭାଷାର ଉନ୍ନତିରେ ?କେହି ଯଦି ଆମକୁ କୁହେ ଓଡ଼ିଆ ଶବ୍ଦ ହାତୀ ଘୋଡ଼ା ଆସିଛି ସଂସ୍କୃତରୁ, ଟେବୁଲ୍ ଚେୟାର ଆସିଛି ଇଂରାଜୀରୁ ଭୁଆ ବିରାଡ଼ି ଗୁଣ୍ଡୁଚିମୂଷା ଆସିଛି ଆଦିବାସୀ ଶବର ଭାଷାରୁ ଆରିସା ପିଠା ଅମାଲୁ ପିଠା ଆସିଛି ତେଲୁଗୁରୁ ସେ ସବୁ ଶୁଣିବାକୁ ଭାରି ମଜା ଲାଗିପାରେ–ନିଜ ଅଣଅଜା ପଣଅଜାଙ୍କ ଗୁପ୍ତ ଡାଇରି ପଢ଼ିବା ପରି। କିନ୍ତୁ ଏହି ଜ୍ଞାନ ଦ୍ୱାରା ଅଣଅଜା ପଣଅଜାଙ୍କୁ ତ ଫେରାଇ ଆଣିହେବ ନାହିଁ ସ୍ୱର୍ଗରୁ ? ତା'ହେଲେ କାହିଁକି ମାତିଛେ ଆମେ ଏ ବିଳାସରେ ? ଆମ ସରକାର ବି ମାତିଛନ୍ତି ଏଥିରେ। ବରଂ ଯଦି ଷ୍ଟାଣ୍ଡାର୍ଡ଼ ଓଡ଼ିଆ ଭାଷାର ଅଭିଧାନଟିଏ କରାଯାଇ ପାରିଥାନ୍ତା, ଏହା ଖାଲି ଆମ ଭାଷାର ବର୍ତ୍ତମାନକୁ ସମୃଦ୍ଧ କରନ୍ତା ନାହିଁ, ଭବିଷ୍ୟତକୁ ମଧ୍ୟ ବଞ୍ଚାନ୍ତା। ଉତ୍ତରପୁରୁଷଙ୍କ ପାଇଁ ଭାଷାଟିଏ ବଞ୍ଚାଇ ରଖନ୍ତା। ଷ୍ଟାଣ୍ଡାର୍ଡ଼ ଡିକ୍ସିନାରୀ ମାନେ ଷ୍ଟାଣ୍ଡାର୍ଡ଼ ଓଡ଼ିଆ ଭାଷାର ଅଭିଧାନ ବୋଲି ଶୁଣିବାକୁ ହେବ । ଷ୍ଟାଣ୍ଡାର୍ଡ଼ ଓଡ଼ିଆ କହିଲେ ଯେଉଁ ଭାଷା କୌଣସି ଆଞ୍ଚଳିକତା ବା ଜାତିଆଣତାରେ ଦୁଷ୍ଟ ନ ହୋଇ ଶିଷ୍ଟମାନଙ୍କ ଦ୍ୱାରା କଥିତ ବା ଲେଖାଯାଇଥାଏ। ଗୋଟିଏ ଭାଷାକୁ ବଞ୍ଚାଇ ରଖିବାକୁ ହେଲେ ଏକମାତ୍ର ଉପାୟ ହେଉଛି ଭାଷାର ଷ୍ଟାଣ୍ଡାର୍ଡ଼କୁ ବଜାୟ ରଖିବା, ଯେଉଁ ଷ୍ଟାଣ୍ଡାର୍ଡ଼କୁ ସମସ୍ତେ ମାନ୍ୟତା ଦେଉଥିବେ। ତା' ହେଲେ ଏ ଭାଷା ବଞ୍ଚିବ।

ଏ ସମ୍ପର୍କରେ ଆମର ପ୍ରିୟ ପଡ଼ୋଶୀ ବଙ୍ଗଳା ଭାଷାକୁ ଦେଖାଯାଉ। ଏକଦା ବଙ୍ଗଳା ଭାଷା ବିରାଟ ଅଞ୍ଚଳରେ କଥିତ ହେଉଥିଲା, ଗଙ୍ଗାର ସେପଟରୁ ଆରମ୍ଭ କରି ସମଗ୍ର ପୂର୍ବବଙ୍ଗରେ। କିନ୍ତୁ ସେତେବେଳେ ବଙ୍ଗଳା ଭାଷା ବୋଲି କିଛି ନଥିଲା। ବିଭିନ୍ନ ଅଞ୍ଚଳରେ ବିଭିନ୍ନ ପ୍ରକାରର କଥା କୁହାଯାଉଥିଲା–ପୂର୍ବବଙ୍ଗର ମଇମନ୍‌ସିଂରେ ଗୋଟିଏ ପ୍ରକାର, ଢାକାରେ ଗୋଟିଏ ପ୍ରକାର, ସିଲ୍‌ହଟ୍‌ରେ ଗୋଟିଏ ପ୍ରକାର, ଅଗରତାଲାରେ ଗୋଟିଏ ପ୍ରକାର, କୁଚ ବିହାର, ବର୍ଦ୍ଧମାନ, ହୁଗୁଳି, ପୁରୁଲିଆରେ ଗୋଟିଏ ଗୋଟିଏ ପ୍ରକାର ଇତ୍ୟାଦି। ଏବେ ବି ଏ ଡାଇଲେକ୍ଟଗୁଡ଼ିକରେ ଲୋକେ କଥାବାର୍ତ୍ତା ହେଉଛନ୍ତି। ଗୋଟିଏ ଅଞ୍ଚଳର ଲୋକେ ଅନ୍ୟ ଅଞ୍ଚଳର କଥା ବୁଝିପାରନ୍ତି ନାହିଁ କି କହି ପାରନ୍ତି ନାହିଁ। ଏ ଡାଇଲେକ୍ଟଗୁଡ଼ିକୁ ବି ବଙ୍ଗଳା ଭାଷାର ଉପଭାଷା କହିବାର କୌଣସି କାରଣ ନଥିଲା, କାରଣ ସେ ପର୍ଯ୍ୟନ୍ତ ବଙ୍ଗଳା ଭାଷା ନିଜେ ହିଁ ସୃଷ୍ଟି ହୋଇନଥିଲା । ଶରତ କାଳରେ ଆକାଶରେ ଖଣ୍ଡ ଖଣ୍ଡିଆ ମେଘ ଭାସିଲା ପରି ଏ ଡାଇଲେକ୍ଟଗୁଡ଼ିକ ବେମୁରବି ହୋଇ ଅନିର୍ଦ୍ଦିଷ୍ଟ ଭାବେ ଘୂରି ବୁଲୁଥିଲେ ଓ ଯେ ଯେଉଁ ଭାବେ ପାରିଲା କହୁଥିଲେ। କୌଣସି ଭାଷାର କର୍ତ୍ତୃତ୍ୱ ନଥିଲା ଏ ଡାଇଲେକ୍ଟଗୁଡ଼ିକ ଉପରେ। ଏହା ମାତ୍ର ଦୁଇ ତିନି ଶହ ବର୍ଷ ତଳର ଘଟଣା। ସେତେବେଳକୁ ଓଡ଼ିଆ ଓ ଅସମୀୟା ଭାଷା ସୃଷ୍ଟି ହୋଇସାରିଲାଣି, କିନ୍ତୁ ବଙ୍ଗଳା ଭାଷାର ଆହୁରି ନିଅଁ ଖୋଳା ହୋଇ ନାହିଁ। ଅର୍ଥାତ୍ ଷ୍ଟାଣ୍ଡାର୍ଡ ବଙ୍ଗଳା ଭାଷା ବୋଲି କିଛି ସୃଷ୍ଟି ହୋଇ ନାହିଁ। ଦୂରତ୍ୱ ହେତୁ ପଡ଼ୋଶୀ ଓଡ଼ିଆ ଭାଷା ଓ ଅସମୀୟା ଭାଷା ଏଇ ଭାସମାନ ଡାଇଲେକ୍ଟଗୁଡ଼ିକ ଉପରେ ନିୟନ୍ତ୍ରଣ ରଖିପାରିଲେ ନାହିଁ। ସେ ନିୟନ୍ତ୍ରଣ ରହିଥିଲେ ଏ ଡାଇଲେକ୍ଟଗୁଡ଼ିକୁ ଅଧେ ଅସମୀୟା ଭାଷାରେ ମିଶିଯାଇଥାନ୍ତେ ଓ ଆଉ ଅଧିକ ଓଡ଼ିଆରେ। ବଙ୍ଗଳା ଭାଷା ସୃଷ୍ଟି ହିଁ ହୋଇନଥାନ୍ତା। ସୁଖର କଥା ଅଷ୍ଟାଦଶ ଶତାବ୍ଦୀ ବେଳକୁ କଲିକତା ମହାନଗରୀ–ଗଢ଼ି ଉଠେ ଓ ଏହା ବ୍ରିଟିଶ ଉପନିବେଶର ହୁଏ ପାଠସ୍ଥଳୀ। ଏହି ନଗରୀରୁ କେନ୍ଦ୍ର କରି ଜନ୍ମ ନିଏ ଏକ ମଧ୍ୟବିତ୍ତ, ଶିକ୍ଷିତ ଗୋଷ୍ଠୀ। ଏହି ଶିକ୍ଷିତ ସହରବାସୀମାନେ ହୁଅନ୍ତି ପ୍ରଥମ ବଙ୍ଗାଳୀ ଏବଂ ସେମାନଙ୍କ ଭାଷା ହୁଏ ଷ୍ଟାଣ୍ଡାର୍ଡ ବଙ୍ଗଳା ଭାଷା। ଏ ଭାଷାରେ ସାହିତ୍ୟ ସୃଷ୍ଟି ହୁଏ, ଯାହାର ପଥପୁରୋଧା ହୁଅନ୍ତି ଈଶ୍ୱର ଚନ୍ଦ୍ର ବିଦ୍ୟାସାଗର, ରବୀନ୍ଦ୍ର ନାଥ, ମାଇକେଲ୍, ମଧୁସୂଦନ ଓ ଅନ୍ୟମାନେ। ପ୍ରଥମ ଥର ପାଇଁ ବଙ୍ଗଳୀ ସମାଜର କେନ୍ଦ୍ର ପ୍ରତିଷ୍ଠିତ ହୁଏ ଓ ଏହି କେନ୍ଦ୍ରକୁ ଆପେ ଆପେ ଆକର୍ଷିତ ହୋଇ ଆସନ୍ତି ପାର୍ଶ୍ୱବର୍ତ୍ତୀ ବେଓ୍ୱାରିସ ଗୋଷ୍ଠୀଗୁଡ଼ିକ। ଆତ୍ମସମର୍ପଣ କରନ୍ତି। କଲିକତାର ଭାଷା ହୁଏ ଷ୍ଟାଣ୍ଡାର୍ଡ ବଙ୍ଗଳା, ଅର୍ଥାତ୍ ଏହି ଭାଷାରେ

ହିଁ କେବଳ ଶିକ୍ଷା ଦିଆଯିବ, ସାହିତ୍ୟ ସୃଷ୍ଟି କରାଯିବ ଓ ଶିଷ୍ଟ ସମାଜ ଦ୍ୱାରା କଥିତ ହେବ। ବଙ୍ଗଳା ଭାଷାର ଷ୍ଟାଣ୍ଡାର୍ଡ ରୂପ ପ୍ରତିଷ୍ଠିତ ହୁଏ ଓ ପୂର୍ବବଙ୍ଗଠାରୁ ଉତ୍ତର, ପଶ୍ଚିମ ସବୁ ଅଞ୍ଚଳର ଲୋକେ ଏହାର କର୍ତ୍ତୃତ୍ୱାଧୀନ ହୁଅନ୍ତି। ଏହି ବୁଝାପଡ଼ା ଦ୍ୱାରା ଅନ୍ୟ ସମସ୍ତ ଅଞ୍ଚଳ ଭାଷାର ଏହି ପ୍ରକାରଟିକୁ ବଙ୍ଗଳା ଭାଷାର ସମ୍ମାନିତ ରୂପ ଭାବେ ସ୍ୱୀକାର କରନ୍ତି। ଯେ ଯେଉଁ ଅଞ୍ଚଳର ଭାଷା କହୁଥାନ୍ତୁ ନା କାହିଁକି, ତାକୁ କଲିକତାର ପ୍ରକାରଟିକୁ ହିଁ ଷ୍ଟାଣ୍ଡାର୍ଡ ଭାଷାର ସମ୍ମାନ ଦେବାକୁ ହେବ। ଏହି ସାମାଜିକ ଅଙ୍ଗୀକାରବଦ୍ଧତା ବଙ୍ଗଳାକୁ ଗୋଟିଏ ଭାଷାର ମର୍ଯ୍ୟାଦା ଦିଏ ଏବଂ ଏକ ବିରାଟ ଅଞ୍ଚଳ ଉପରେ ନିଜର ଆଧିପତ୍ୟ ବିସ୍ତାର କରେ। ଏହା ହୋଇନଥିଲେ ବଙ୍ଗଳା ଭାଷା ଜନ୍ମ ହିଁ ହୋଇ ନଥାନ୍ତା। ଏହି ଅଙ୍ଗୀକାରବଦ୍ଧତା ଯେ କେତେ ସୁଦୃଢ଼ ତାହା ସହଜରେ ଅନୁମେୟ। ଭାରତବର୍ଷର ବିଭାଜନ ଓ ବାଂଲାଦେଶର ସ୍ୱାଧୀନତା ପରେ ବି ଷ୍ଟାଣ୍ଡାର୍ଡ ବଙ୍ଗଳାର କର୍ତ୍ତୃତ୍ୱ ଊଣା ହୋଇନାହିଁ। ବାଂଲାଦେଶ ଏକ ସ୍ୱାଧୀନ ରାଷ୍ଟ୍ର ହୋଇଥିବା ସତ୍ତ୍ୱେ ଏହା ନିଜ ରାଜ୍ୟର କୌଣସି ଏକ ଡାଇଲେକ୍ଟକୁ ଷ୍ଟାଣ୍ଡାର୍ଡର ଭୂମିକା ଓ ମାନ୍ୟତା ନ ଦେଇ କଲିକତାର ବଙ୍ଗଳାକୁ ହିଁ ଷ୍ଟାଣ୍ଡାର୍ଡ ରୂପେ ମାନି ନେଇଛନ୍ତି। ଏହା ଫଳରେ ବଙ୍ଗଳା ଭାଷା ଆଜି ସୁରକ୍ଷିତ ଓ ଏହା ଏକ ବିରାଟ ଅଞ୍ଚଳକୁ ନିଜର ଛତ୍ରଛାୟା ତଳେ ସଂଯତ କରି ରଖିଛି। ଏହା ଏକ ସାମାଜିକ ବୁଝାପଡ଼ା ବା ଚୁକ୍ତି। ଏ ଚୁକ୍ତି ଯଦିଓ କାଳି କଲମରେ ସ୍ୱାକ୍ଷରିତ ହୋଇନାହିଁ, ସମସ୍ତେ ଏହି ଚୁକ୍ତିର ଅଧୀନ ଓ ସମସ୍ତେ ନିଜକୁ ବଙ୍ଗଳାଭାଷୀ କହିବା ପାଇଁ ଅଙ୍ଗୀକାରବଦ୍ଧ। ଆଞ୍ଚଳିକ ଭାଷାଗୁଡ଼ିକ ସ୍ୱାଭାବିକ ସ୍ୱେଚ୍ଛାଚାରରେ ଅଙ୍କୁଶ ଲାଗିଛି। ବର୍ତ୍ତମାନ ସୁଦ୍ଧା ବଙ୍ଗଳାର ବିଭିନ୍ନ ଉପଭାଷାଗୁଡ଼ିକ ଲୋକ ପାଇ ନାହାନ୍ତି ବା ନିକଟରେ ଲୋପ ପାଇବାର ସମ୍ଭାବନା ନାହିଁ। ତା ସତ୍ତ୍ୱେ ବଙ୍ଗଳା ଭାଷା ସୁରକ୍ଷିତ ଓ ସମଗ୍ର ବଙ୍ଗାଳୀ ଜାତିକୁ ଏକ କରି ରଖିଛି। ଏହା କେବଳ ଷ୍ଟାଣ୍ଡାର୍ଡ ଭାଷାର କରାମତି ଯୋଗୁଁ ହିଁ ସମ୍ଭବ ହୋଇଛି। ଭାଷା ସ୍ୱଭାବତଃ ପରିବର୍ତ୍ତନଶୀଳ ଆଉ ଯଦି ପ୍ରତିଟି ଅଞ୍ଚଳରେ ଏ ପରିବର୍ତ୍ତନ ସ୍ୱଚ୍ଛନ୍ଦରେ ବଢ଼ି ଚାଲେ, ତା ହେଲେ ଭାଷାର ଫାଟ ସୃଷ୍ଟି ହେବ, ଅର୍ଥାତ୍ ଗୋଟିଏ ଅଞ୍ଚଳର ଲୋକେ ଅନ୍ୟ ଅଞ୍ଚଳର ଲୋକଙ୍କଠାରୁ ଭିନ୍ନ ବୋଲି ଭାବିବେ ଓ ପରସ୍ପରକୁ ବୁଝି ନପାରିବାର ବି ସମ୍ଭାବନା ଅଛି। ତେଣୁ ଭାଷାର କେଉଁଟି ଶିଷ୍ଟ–ପ୍ରୟୋଗ ସେ ବିଷୟରେ ପ୍ରତ୍ୟେକ ଶିକ୍ଷିତ ବ୍ୟକ୍ତି ନିଶ୍ଚିତ ହେବା ଉଚିତ୍। ଆମେ ଯାଉଛେ ଠିକ୍ ନା ଆମେ ଯାଉଛନ୍ତି ଠିକ୍ ସେ ବିଷୟରେ ଯେପରି ଦ୍ୱିମତ ଦେଖାନଯାଏ। ପ୍ରତ୍ୟେକ ଅଞ୍ଚଳର କଥାରେ ବିଶେଷତ୍ୱ ଓ ପାର୍ଥକ୍ୟ ରହିବା ସ୍ୱାଭାବିକ। ରହୁ, ଆମେ ତାହାର ବିରୋଧ କରୁ ନାହୁଁ। କିନ୍ତୁ ଅଞ୍ଚଳ, ଜାତି, ଗୋଷ୍ଠୀ ନିର୍ବିଶେଷରେ ପ୍ରତ୍ୟେକ ଶିଷ୍ଟ, ଶିକ୍ଷିତ ଓଡ଼ିଆ ଓଡ଼ିଆ ଭାଷାର ଷ୍ଟାଣ୍ଡାର୍ଡ ରୂପଟିରେ ଅବଗତ ରହିବା ବିଧେୟ। ଷ୍ଟାଣ୍ଡାର୍ଡ ଭାଷାରେ ନିପୁଣତା ଶିକ୍ଷା ଓ ଶିଷ୍ଟତାର ପରିଚାୟକ। ଏହି ବୁଝାପଡ଼ା ଯଦି ନହୁଏ ତେବେ ଆଞ୍ଚଳିକ ଉପଭାଷାଗୁଡ଼ିକ ସ୍ୱାଧୀନତା ଘୋଷଣା କରିବେ, ଯେଉଁ ପଥରେ ଏବେ ଆମ ପଶ୍ଚିମାଞ୍ଚଳ ଗତି କରୁଛି। ସେମାନେ ଷ୍ଟାଣ୍ଡାର୍ଡ ଓଡ଼ିଆର ସାର୍ବଭୌମତାକୁ ସ୍ୱୀକାର କରିବାକୁ ଅନିଚ୍ଛୁକ। ନିଜକୁ ଓଡ଼ିଆ ଭାଷୀ ବୋଲି ପରିଚୟ ଦେବାକୁ କୁଣ୍ଠିତ। ଏହା ଓଡ଼ିଆ ଜାତିର ଏକ ଦୁର୍ଗତି। ଗଙ୍ଗାଧର ମେହେରଙ୍କଠାରୁ ଶ୍ରଦ୍ଧାକାର ସୂପକାରଙ୍କ ପର୍ଯ୍ୟନ୍ତ ବହୁ ଶିକ୍ଷିତ, ପ୍ରତିଷ୍ଠିତ ପଶ୍ଚିମାଞ୍ଚଳବାସୀଙ୍କ ପାଇଁ ଏ ବିଷୟରେ କେବେ କୌଣସି ଦ୍ୱିଧା ନଥିଲା। ବର୍ତ୍ତମାନ ମୁଷ୍ଟିମେୟ ଲୋକ, ଷ୍ଟାଣ୍ଡାର୍ଡ ଓଡ଼ିଆକୁ କଟକୀ ଭାଷା ନାମ ଦେଇ ଏହାର ବିରୋଧ କରୁଛନ୍ତି। ଷ୍ଟାଣ୍ଡାର୍ଡ ଓଡ଼ିଆ ଭାଷା କଟକୀ ଭାଷା ନୁହେଁ, ନା ପୁରୀ ବା ବାଲେଶ୍ୱରର। କଟକର ସ୍ଥାନୀୟ ଭାଷାରେ କୁଆଡ଼େ ହୁଏ– ଲ ପଇସାକୁ ଲ ଟା ଲଡ଼ିଆ, ଲବୁ ତ ଲେ, ଲଇଲେ ଲାଲାବାବୁ ଲେଇଯିବ। ଷ୍ଟାଣ୍ଡାର୍ଡ ଓଡ଼ିଆ ଏ ଆଞ୍ଚଳିକତାକୁ ବରଦାସ୍ତ କରିବ ନାହିଁ। ଷ୍ଟାଣ୍ଡାର୍ଡ ଓଡ଼ିଆ ଦୀର୍ଘ ପାଞ୍ଚଶହ ବର୍ଷର ବିବର୍ତ୍ତନ ଫଳରେ ଓ ଅସଂଖ୍ୟ ସାହିତ୍ୟ କୃତିରେ ସମୃଦ୍ଧ ହୋଇ ପ୍ରତିଷ୍ଠିତ ହୋଇଛି। ଏହା ଏକ ଐତିହାସିକ ପରିଣତି। ଏହା ଶିକ୍ଷିତ, ଶିଷ୍ଟ ଓଡ଼ିଆ ସମାଜର ଭାଷା ଓ ଓଡ଼ିଆ ସାହିତ୍ୟର ଭାଷା। ଏହି ଭାଷାର ପ୍ରତିଷ୍ଠା ପଛରେ ସମଗ୍ର ଓଡ଼ିଆ ଜାତିର ଅବଦାନ ରହିଛି। ଏହି ସାମାଜିକ ଚୁକ୍ତିକୁ ଯଦି ଅସ୍ୱୀକାର କରାଯାଏ, ତା'ହେଲେ ଓଡ଼ିଆ ଜାତି ଖଣ୍ଡ ଖଣ୍ଡ ହୋଇଯିବା ଅବସମ୍ଭାବୀ ବର୍ତ୍ତମାନ ଓଡ଼ିଆ ଭାଷା କ୍ଷେତ୍ରରେ ସେଇ ଅଙ୍ଗୀକାରବଦ୍ଧତାର ଅଭାବ ଦେଖାଦେଇଛି। ଏହା ଜାତି ପକ୍ଷରେ ଏକ ଦୁର୍ଭାଗ୍ୟର ଲକ୍ଷଣ।

ଆମ ଲୋକଙ୍କର ଏକ ଅନ୍ଧବିଶ୍ୱାସ ଅଛି ଯେ ଓଡ଼ିଆ ଭାଷାକୁ ଓଡ଼ିଆ ସାହିତ୍ୟ ହିଁ ବଞ୍ଚାଇ ରଖିଛି। ସାହିତ୍ୟର ଯଦିଓ ଗୋଟିଏ ବିରାଟ ଭୂମିକା ରହିଛି ଭାଷାର ଉନ୍ନତିରେ ଏକମାତ୍ର ସାହିତ୍ୟହିଁ ଭାଷାକୁ ବଞ୍ଚାଇ ରଖିଛି କହିବା ଭୁଲ୍। ପୃଥିବୀର ଏବେ ବି ଅସଂଖ୍ୟ ଅଲିଖିତ ଭାଷା ଅଛନ୍ତି ଯେଉଁଥିରେ କୌଣସି ଲିଖିତ ସାହିତ୍ୟ ସୃଷ୍ଟି ହୋଇ ନାହିଁ। ତଥାପି ସେ ଭାଷାଗୁଡ଼ିକ ବଞ୍ଚିଛନ୍ତି ଓ ନିଜ ନିଜର ସାମାଜିକ ଦାୟିତ୍ୱ ବହନ କରିଛନ୍ତି। ଗୋଟିଏ ସମାଜରେ ଭାଷା ଦ୍ୱାରା ନାନା ପ୍ରକାର କାର୍ଯ୍ୟ ସଂପନ୍ନ ହୋଇଥାଏ। ସାହିତ୍ୟ ବି ସେହିପରି ଗୋଟିଏ କାର୍ଯ୍ୟ। ଭାଷାକୁ ନେଇ ସାହିତ୍ୟ, ସାହିତ୍ୟକୁ ନେଇ ଭାଷା ନୁହେଁ। ସାହିତ୍ୟ ନଥାଇ ଅନେକ ଭାଷା

# ଓଡ଼ିଆ ରୀତି ସାହିତ୍ୟରେ ଓଡ଼ିଆ ଭାଷାର ସ୍ୱରୂପ

ସଦାନଂଦ ନାୟକ

୧.୦: କାଷ୍ଠ ପିତୁଳା ନାରୀ ରୂପେ।
ଥୋଇବ ଯତିଂକ ସମୀପେ ॥
ଯତିଏ ତା'ର ମୁଖ ଚାହିଁ।
ଚରଣ ଅଗ୍ର ଯେବେ ଛୁଇଁ॥
ମନ ମଛଇ ତାହାଂକର।
ଏଣୁ ମନ୍ମଥ ସୁଖ ଘର ॥
ଜଳେ ପାଷାଣ ପ୍ରାୟ ମଜେ।
ଗଜ ବଂଧନ ଯେହ୍ନେ ଗଜେ ॥
ଏଣୁ କୁଂଜର ଭାବେ ମଣି।
ଗୁରୁ ବଚନ ପରିମାଣି ॥
ସଂଗ ନ କରି ନାରୀ ମେଳେ।
ନିର୍ଭୟେ ବୁଲେ ଭୂମି ତଳେ ॥
ଏଣୁ କାମିନୀ ସଂଗ ତେଜି।
ଜ୍ଞାନେ ବସଇ ଚକ୍ଷୁ ବୁଜି ॥

(ଭାଗବତ)

ଷୋଡ଼ଶ ଶତାବ୍ଦୀରେ ରଚିତ ଜଗନ୍ନାଥ ଦାସଂକ ଭାଗବତର ଉପରୋକ୍ତ ଅଂଶ ସାଂପ୍ରତିକ କାଳର ଓଡ଼ିଆ ମାନକ ଭାଷାର କେବଳ ସଂପୂର୍ଣ୍ଣ ନିକଟବର୍ତ୍ତୀ ବରଂ ଏପରି କୁହାଯାଇପାରେ, ବର୍ତ୍ତମାନର ମାନକ ଓଡ଼ିଆ ଭାଷାଠାରୁ ଏହା ଅଧିକ ମାର୍ଜିତ। ତେଣୁ ଓଡ଼ିଆ ଭାଷା ଷୋଡ଼ଶ ଶତାବ୍ଦୀ ବେଳକୁ ପୂର୍ଣ୍ଣ ବିକଶିତ ହୋଇସାରି ଥିଲା, ଯାହାକି ଭାରତର ଅନ୍ୟାନ୍ୟ ଆଧୁନିକ ଭାରତୀୟ ଆର୍ଯ୍ୟଠାରୁ ଥିଲା ଉନ୍ନତତର । ଓଡ଼ିଆ ଭାଷା ଏକ ବିସ୍ତୃତ ଅଂଚଳରେ ପରିବ୍ୟାପ୍ତ ଥିଲା, ତେଣୁ ତତ୍କାଳୀନ ଓଡ଼ିଆ ଭାଷାରେ ଅଂଚଳ ଭେଦରେ ଭିନ୍ନତା ପରିଲକ୍ଷିତ ହେବା ସ୍ୱାଭାବିକ, କିନ୍ତୁ ବୋଧଗମ୍ୟତାକୁ ଅସ୍ୱୀକାର କରାଯାଇ ପାରିବ ନାହିଁ, କାରଣ ତାହା ହୋଇ ନଥିଲେ ଓଡ଼ିଶାର ପ୍ରତ୍ୟେକ କୋଣ ଅନୁକୋଣରେ ଜଗନ୍ନାଥ ଦାସଂକ ଭାଗବତ ଚର୍ଚ୍ଚା ନିମନ୍ତେ ଭାଗବତ ଟୁଂଗି ଗଢ଼ି ଉଠି ନଥାନ୍ତା । ଷୋଡ଼ଶ ଶତାବ୍ଦୀ ବେଳକୁ ଓଡ଼ିଆ ଭାଷା କେବଳ ବିକାଶର ଶୀର୍ଷକୁ ସ୍ପର୍ଶ କରିଥିଲା ତାହା ନୁହେଁ, ତହିଁରେ ସୃଷ୍ଟ ସାହିତ୍ୟ ଥିଲା ବେଶ୍ ଉଚ୍ଚମାନର ତାତ୍ତ୍ୱିକ ମଧ୍ୟ। ତେଣୁ ଉଭୟ କଥିତ ଓ ଲିଖିତ ସ୍ତରରେ ଏହା ଥିଲା ପୂର୍ଣ୍ଣ ବିକଶିତ । ଏହି ସମୟରେ ରଚିତ ବଳରାମ ଦାସଂକ ଜଗନ୍‌ମୋହନ ରାମାୟଣ, ବ୍ରହ୍ମାଣ୍ଡ ଭୂଗୋଳ, ବଟ ଅବକାଶ, ଅଚ୍ୟୁତାନଂଦ ଦାସଙ୍କ ହରିବଂଶ, ଶୂନ୍ୟସଂହିତା, ଯଶୋବନ୍ତ ଦାସଙ୍କ ଗୋବିନ୍ଦ ଚନ୍ଦ୍ର, ପ୍ରେମ ଭକ୍ତି ବ୍ରହ୍ମଗୀତା ଓ ଶିଶୁ ଶଂକର ଦାସଙ୍କ ହେତୁ ଉଦୟ ଭାଗବତ ଇତ୍ୟାଦିରେ ଓଡ଼ିଆ ଭାଷାର ଉତ୍କର୍ଷ ପ୍ରତିପାଦିତ ହୋଇଛି ।

ଷୋଡ଼ଶ ଶତାବ୍ଦୀ ମୁଖ୍ୟତଃ ଥିଲା ଓଡ଼ିଆ ପୁରାଣ ସାହିତ୍ୟର ଯୁଗ । ସାଧାରଣ ଲୋକଙ୍କ ଉଦ୍ଦେଶ୍ୟରେ ଏଗୁଡ଼ିକ ରଚିତ ହେଉଥିବା ହେତୁ ସାଧାରଣ ମଣିଷର କଥିତ ଭାଷାକୁ ଏହି ସମୟରେ ପ୍ରୟୋଗ କରିବା ନିମନ୍ତେ ଲେଖକମାନେ ନିଶ୍ଚିତ ପ୍ରୟାସ କରିଥିବେ । ଏହି ସମୟର ସାହିତ୍ୟ କେତେକ ସ୍ଥଳରେ ଅବଶ୍ୟ ଥିଲା ତାତ୍ତ୍ୱିକ, ଗୁରୁ-ଶିଷ୍ୟ ପରଂପରା ଆଧାରିତ। ଆତ୍ମାଟି ତତ୍ତ୍ୱ ଭିତ୍ତିକ ହୋଇପାରେ, କିନ୍ତୁ ଭାଷା ଥିଲା ସରଳ, ସାଧାରଣ ମଣିଷର ଭାଷା। ଯେପରି-

ବୋହୂ ଚାଲି ନ ଜାଣଇ ଲୋ,
ଗୋଡ଼ ପଡୁଥାଇ ବଂକା,
ଯୋଉ ଦିନ ବୋହୂ ସଳଖେ ଚାଲିବ
ଘରେ ପଡ଼ିଯିବ ଡକା।

କିମ୍ବା -

ପୋଖରୀ ଗୋଟିକ ଚାରି ଚଉରସ
ଡିଂବ ପାରିଗଲା ଅଣ୍ଡିରା ହଂସ। ଇତ୍ୟାଦି

୨.୦: ଏହାର ପରବର୍ତ୍ତୀ ସମୟରେ ସାହିତ୍ୟରେ ପରିବର୍ତ୍ତନର ସ୍ୱର ଦେଖିବାକୁ ମିଳେ । ଓଡ଼ିଆ ସାହିତ୍ୟର ଅଂଗ ଓ ଆତ୍ମାରେ ପରିବର୍ତ୍ତନ ଆସିଛି। ଆତ୍ମାଟି ଧର୍ମ ବା ତତ୍ତ୍ୱ ଆଧାରିତ ନ ହୋଇ ହୋଇଛି ପ୍ରେମ ଆଧାରିତ ଏବଂ ସାହିତ୍ୟ ସୃଷ୍ଟି ରସ, ରୀତି, ଧ୍ୱନି, ବକ୍ରୋକ୍ତି, ଅଳଂକାର ଓ ଔଚିତ୍ୟକୁ ଭିତ୍ତିକରି ଗଢ଼ି ଉଠିଛି । କୁହାଯାଏ ଓଡ଼ିଆ ସାହିତ୍ୟକୁ ସଂସ୍କୃତ ସାହିତ୍ୟର ସମକକ୍ଷ କରିବା ନିମନ୍ତେ ତତ୍‌କାଳୀନ ସାହିତ୍ୟ ସାଧକମାନେ ପ୍ରୟାସ କରିଥିଲେ। ଏହା କିନ୍ତୁ ଆଂଶିକ ସତ୍ୟ ବରଂ ଷୋଡ଼ଶ ଶତାବ୍ଦୀ ପରବର୍ତ୍ତୀ ଶ୍ରୋତା ତଥା ପାଠକମାନଙ୍କ ରୁଚି ତଥା ଆବଶ୍ୟକତାକୁ ପୂରଣ କରିବାକୁ ଯାଇ ସାହିତ୍ୟରେ ଦେଖାଦେଇଛି ପରିବର୍ତ୍ତନ। ଅର୍ଜୁନ ଦାସ, ନରସିଂହ ସେଣ, ବିଷ୍ଣୁ ଦାସ, ଶିଶୁ ଶଂକର ଦାସ, କାର୍ତ୍ତିକ ଦାସ, ଦେବଦୁର୍ଲଭ ଦାସ, ପ୍ରତାପ ରାୟଙ୍କ ପରି କବି ପରିବର୍ତ୍ତିତ ସାହିତ୍ୟର ଯେଉଁ ଭିତ୍ତି ସ୍ଥାପନ କରିଥିଲେ ପରବର୍ତ୍ତୀ କାଳରେ ଧନଂଜୟ ଭଂଜ, ଦୀନକୃଷ୍ଣ ଦାସ, ଲୋକନାଥ ବିଦ୍ୟାଧର, ଉପେନ୍ଦ୍ର ଭଂଜ, ଅଭିମନ୍ୟୁ ସାମନ୍ତ ସିଂହାର, ସଦାନଂଦ କବିସୂର୍ଯ୍ୟ ବ୍ରହ୍ମା ଓ ବଳଦେବ ରଥଙ୍କ ପରି ମହାନ କବି ତାହାକୁ ସାହିତ୍ୟର କୋଣାର୍କରେ ପରିଣତ କରିଥିଲେ। ଷୋଡ଼ଶ-ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରୁ ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ରଚିତ ଓଡ଼ିଆ ସାହିତ୍ୟ କେବଳ ସାହିତ୍ୟିକ ଉତ୍କର୍ଷ ଦୃଷ୍ଟିରୁ ନୁହେଁ ଭାଷା ଦୃଷ୍ଟିରୁ ମଧ୍ୟ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

୩.୦: ଭାଷା ଚିର ପରିବର୍ତ୍ତନଶୀଳ। କେତେକ ଭାଷା ବ୍ୟବହୃତ ନ ହୋଇ ଲୋପ ପାଇ ଯାଉଥିବା ସତ୍ୟ, କିନ୍ତୁ ଗୋଟିଏ ବ୍ୟବହୃତ ଭାଷାରେ ଚିର ବିକାଶ ସଂଘଟିତ ହେଉଥାଏ। ଧ୍ୱନି, ଶବ୍ଦ , ପଦ, ବାକ୍ୟ ଓ ଅର୍ଥରେ ଉନ୍ନତି ଘଟୁଥାଏ। ଗୋଟିଏ ଭାଷାର ସାହିତ୍ୟ ସାଧନା ତାକୁ ସର୍ବଦା ପୁଷ୍ଟ କରୁଥାଏ। ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟର ବିକାଶ ଧାରା ଓଡ଼ିଆ ସାହିତ୍ୟକୁ ବେଶ୍ ସମୃଦ୍ଧ କରି ଗଢ଼ିତୋଳିଛି।

୩.୧: ରୀତି ସାହିତ୍ୟ ଅବଶ୍ୟ ବୌଦ୍ଧିକ, କେତେକ କ୍ଷେତ୍ରରେ ଏହା ଦରକାରୀ, ଏହାର ଶ୍ରୋତା ବା ପାଠକ ସ୍ୱତନ୍ତ୍ର । ଏହି ସାହିତ୍ୟକୁ ଉପଭୋଗ କରିବା ଲୋକେ ରସିକ ଓ ଗ୍ରାହକ । ଗ୍ରହଣ କରିବାର ସ୍ୱତନ୍ତ୍ର ଯୋଗ୍ୟତା ଅବଶ୍ୟ ଆବଶ୍ୟକ, ତେଣୁ ସାଧାରଣ ଲୋକଙ୍କ ସହିତ ବୌଦ୍ଧିକ ଜ୍ଞାନଦିପ୍ତ, ବିଜ୍ଞ, ବହୁ ଶାସ୍ତ୍ର ଅଧ୍ୟୟନକାରୀ ଲୋକଙ୍କୁ ଆଖି ଆଗରେ ରଖି ସାହିତ୍ୟିକ ତା'ର ସୃଷ୍ଟିକୁ ପୁଷ୍ଟ କରେ । ତେଣୁ କେବଳ ସାହିତ୍ୟର ଆଂଗିକ, ଆତ୍ମିକରେ ବିକାଶ ସାଧନ ହେବ ନାହିଁ ଭାଷାରେ ମଧ୍ୟ ଉନ୍ନତି ପରିଲକ୍ଷିତ ହେଲା । ସାଧାରଣ ଲୋକର ଦୈନନ୍ଦିନ ଭାଷା ସହିତ ଉଚ୍ଚାଙ୍ଗ ବୌଦ୍ଧିକ ଭାଷାର ମିଶ୍ରଣ ଘଟି ଘଟି ଭାଷା କ୍ରମେ ମାର୍ଜିତ ହୋଇଛି । ରୀତି ସାହିତ୍ୟର ଶୈଳୀ କଳା ଓ ବହୁଶାସ୍ତ୍ର ଦର୍ଶିତା ଓଡ଼ିଆ ଭାଷାକୁ ସମୃଦ୍ଧ କରିବାରେ ବେଶ୍ ସହାୟକ ହୋଇଛି ।

୩.୧.୧: 'ରସ'ରୀତି ସାହିତ୍ୟର ଏକ ବିଶିଷ୍ଟ ଅଂଗ । ବିଶ୍ୱନାଥ କବିରାଜ କହିଛନ୍ତି 'ବାକ୍ୟଂ ରସାତ୍ମକଂ କାବ୍ୟଂ' । ପ୍ରାଚ୍ୟ ସାହିତ୍ୟ ତତ୍ତ୍ୱବିତ୍‌ମାନେ ରସକୁ ଆନନ୍ଦମୟ, ଚିନ୍ମୟ, ବ୍ରହ୍ମାସ୍ୱାଦ ସହୋଦର । ଅଲୌକିକ ଓ ଅନିର୍ବଚନୀୟ ବୋଲି ଅଭିହିତ କରନ୍ତି । ନାଟ୍ୟ ଶାସ୍ତ୍ରରେ ଭରତମୁନି ରସର ସ୍ୱରୂପ ଓ ଭେଦ ନିର୍ଣ୍ଣୟ କରି କାବ୍ୟରେ ରସର ଭୂମିକାକୁ ଚମତ୍କାର ଭାବରେ ପ୍ରଦର୍ଶନ କଲେ । ରୀତି ସାହିତ୍ୟର କାହାଣୀରେ ଚମତ୍କାରିତା ଆଣିବା ନିମନ୍ତେ କାବ୍ୟକାରମାନେ ବିଭିନ୍ନ ରସକୁ ଆଶ୍ରୟ କରି କାହାଣୀ ଉପସ୍ଥାପନ କଲେ । ତେଣୁ ରସ ରୀତି ସାହିତ୍ୟରେ ଅନିବାର୍ଯ୍ୟ ଅଟେ । ମୁଖ୍ୟତଃ ଶୃଙ୍ଗାର ରସକୁ ବାଦ ଦେଇ ରୀତି ସାହିତ୍ୟର କଳ୍ପନା କରାଯାଇ ନପାରେ । ତେଣୁ କୁହାଯାଇଛି– 'ଶୃଂଗାରୀ ଚେତ୍ କବିଃ କାବ୍ୟେ ଜାତଂ ରସମୟ ଜଗତ୍ । ସ ଏବ ବୀତରାଗଶ୍ଚେନ୍ନୀରସଂ ସର୍ବମେବ ତତ୍ ।'' (ଭୋଜରାଜ ସରସ୍ୱତୀ କଣ୍ଠାଭରଣ ।) ବୈଷ୍ଣବ ଶାସ୍ତ୍ରରେ ଶୃଂଗାର ରସକୁ 'ଉଜ୍ଜ୍ୱଳ ରସ' ଭାବରେ ନାମିତ କରାଯାଇଛି ।

ଓଡ଼ିଆ ରୀତି ସାହିତ୍ୟରେ ରସ ପରିବେଷଣ, ତା'ର ଭାଷାକୁ ସୌକୁମାର୍ଯ୍ୟ ଓ ସମୃଦ୍ଧ ଆଣି ଦେଇଛି । ଶୃଂଗାର, ହାସ୍ୟ, କରୁଣ, ରୌଦ୍ର, ବୀର, ଭୟାନକ, ବୀଭତସ୍, ଅଦ୍‌ଭୁତ, ଶାନ୍ତ ବାତ୍‌ସଲ୍ୟାଦି ରସର ପରିବେଷଣରେ ଭାଷାରେ ଭିନ୍ନତା ପରିଲକ୍ଷିତ ହୁଏ । ଶୃଂଗାର, ହାସ୍ୟ, କରୁଣ ଓ ଶାନ୍ତ ରସର ଭାଷା ସାଧାରଣତଃ କୋମଳ ଓ ସରଳ ଶବ୍ଦ ସଂବଳିତ ହୋଇଥାଏ । ଏହି ଶବ୍ଦର ଧ୍ୱନିଗୁଡ଼ିକ ସାଧାରଣତଃ ଅଳ୍ପପ୍ରାଣ ବ୍ୟଂଜନ ଓ ମୁକ୍ତାକ୍ଷର ବିଶିଷ୍ଟ ଅଟନ୍ତି ଯଥା–

(କ) 'ମୃଦୁଅଂଗୀ ଅଂଗୀକାର ଏ ଭଂଗୀରୁ ଜାଣି ।
ନେଇ ଚିବୁକେ ପୁରୁଷ ନିବେଶିଲା ପାଣି ଯେ।
ଭୋଳ ହୋଇ କୋଳ କରି ଶ୍ରୀମୁଖ ଟେକିଲା।
ଯୋଗଭଂଗୀ ଭଂଗୀସ୍ଥାନ ଥୟ ନ ରଖିଲା ଯେ।
(ଲାବଣ୍ୟ ବତୀ)

(ଖ) କାଳିଆ କମଳ ଦେଖିଲେ
କମଳ ନୟନରେ ହୋଏ ଜରଜର

ଦେଖି ନବଘନ ତାର ଅପଘନ
ପୁଲକି ହୁଅଇ ଥର ଥର ।

ଘନ ସୁଂଦର ହେ ଯମୁନା ଯିବାକୁ ତରତର

ଏ ଅତି ବିଚିତ୍ର କଜ୍ଜଳରେ
ଚିତ୍ର ଲେଖି ଚୁଂବଦିଏ ବାର ବାର ।

(ବିଦଗ୍ଧ ଚିନ୍ତାମଣି)

(ଗ) କାଳିଂଦୀ କୂଳିୟା କଦଂବ ମୂଳିଆ
କାଇଁଚ ମାଳିଆ ପାଦେ
କୃଷ୍ଣଦାସ ମନ ବଚନ କର୍ତ୍ତବ୍ୟ
ରଖିଅଛି ଅପ୍ରମାଦେ, ସେ କାଳେ
କାଳ ଭୟ ବିନାଶିବ ହେଲେ ସେ
କଷ୍ଟ ନ ପାଇବ ଭବଜଳେ ସେ
କିଛି ନ କରିବ ଅମଂଗଳେ ସେ । ରସ କଲ୍ଲୋଳ)

ଅନ୍ୟ ପକ୍ଷରେ ରୌଦ୍ର, ବୀଭତସଂ ଓ ବୀର ରସ ପରିବେଷଣରେ ମହାପ୍ରାଣ ଧ୍ୱନି, ସଂଯୁକ୍ତ ଧ୍ୱନି ଓ ଆବଦ୍ଧାକ୍ଷରର ଅଧିକ ପ୍ରୟୋଗ ଘଟିଥାଏ, ଯାହାଫଳରେ କଥିତ ଭାଷାର ଶବ୍ଦ ଭିନ୍ନ କେତେକ କଷ୍ଟ ଉଚାରିତ ଶବ୍ଦର ଆଗମନ ଓଡ଼ିଆ ଭାଷାକୁ ସମୃଦ୍ଧ ଭାଷା ରୂପେ ଗଢି ତୋଳିଛି ଯଥା–

(କ) ସଂପାତ ତୀକ୍ଷ ମାର୍ଗଣ ଜାତ
ଗୁଣ ଟଂକାର ଯହିଁ ସ୍ତନିତ
କୃପାଣ ଝଟକିବା ତଡ଼ିତ, ଧ୍ୱଜ ବକାଳି ଯେ ।
ସଂକୁଳ ରବ ଯୋଦ୍ଧାମାଂକ,
ଭେକ ଡାହୁକ ମୟୂର ଡାକ
କୋଦଂଡ଼ ରୁଂଡ଼ ଇଂଦ୍ର କାର୍ମୁକ, ଅତ୍ୟନ୍ତ ଝଳି ଯେ
ସଂକ୍ଷେପରେ ବାତୁଳି କରକା ବୃଷ୍ଟି ଯେ
ସତ ଶକୁନ୍ତ ତହିଁ ହୋଇଲେ କଷ୍ଟୀ ଯେ ।
(ସୁଭଦ୍ରା ପରିଣୟ)

ଖ) ଶ୍ୱାନ ପାଂଚ ସାତ ତୁଂଡ଼ ଓଟାରନ୍ତି ଏକ ପିଂଡ଼
ଖଂଡ଼ ଖଂଡ଼ କରି ଘେନି ଯାଇ ହେ ।

ଲୁଚାଇ ଗୁଳ୍ମ ପୁଣି ହିଁ ସେହି ପ୍ରକାରେ
କୌଣପ ମଧ୍ୟକୁ ଆସେ ଧାଇଁ ହେ ।
(ଲାବଣ୍ୟ ବତୀ)

ଏହିପରି ରସ ପରିବେଷଣ ମାଧ୍ୟମରେ ଓଡ଼ିଆ ରୀତି ସାହିତ୍ୟ ଓଡ଼ିଆ ଭାଷାକୁ ଉନ୍ନତ କରିପାରିଛି ।

୩.୧.୨: 'ରୀତି' ଓଡ଼ିଆ ସାହିତ୍ୟ ସମେତ ଓଡ଼ିଆ ଭାଷାକୁ ମଧ୍ୟ ସମୃଦ୍ଧ କରିଛି । ପଦମାନଙ୍କର ବିଶିଷ୍ଟ ରଚନା ଅଥବା ସଂଘଟନାକୁ ରୀତି କୁହାଯାଏ । ଆଚାର୍ଯ୍ୟ ବାମନ ରୀତିକୁ କାବ୍ୟର ଆତ୍ମା ବୋଲି କହିଛନ୍ତି । ଆଳଂକାରିକମାନେ ରୀତିର ଅନେକ ଭେଦ ଦର୍ଶାଇ ଥିଲେ ମଧ୍ୟ ମୁଖ୍ୟତଃ ରୀତି ଚାରି ଭାଗରେ ବିଭକ୍ତ । ଯଥା– ବୈଦର୍ଭୀ ରୀତି, ଗୌଡୀ ରୀତି, ପାଂଚାଳୀ ରୀତି ଓ ଲାଟୀ ରୀତି ।

ବୈଦର୍ଭୀ ରୀତି ହେଉଛି– ମାଧୁର୍ଯ୍ୟ ଗୁଣ ବ୍ୟଂଜକ ବର୍ଣ୍ଣମାନଙ୍କ ଦ୍ୱାରା କୋମଳ ତଥା ସମାସହୀନ ବା ସ୍ୱଳ୍ପ ସମାସ ଯୁକ୍ତ ରଚନା । ମୁଖ୍ୟତଃ ଶୃଂଗାର, କରୁଣ ଓ ଶାନ୍ତ ରସ ଏହି ରୀତି ମାଧ୍ୟମରେ ପ୍ରକାଶିତ ହୁଅନ୍ତି । ଏହି ରୀତିରେ ମୂର୍ଦ୍ଧନ୍ୟ ବର୍ଣ୍ଣ ଓ 'ଣ' ସହିତ ସଂଯୁକ୍ତ ମୂର୍ଦ୍ଧନ୍ୟ ବର୍ଣ୍ଣର ପରିହାର କରାଯାଇଥାଏ । ଗୌଡ଼ୀ ରୀତି ସଂପର୍କରେ ବିଶ୍ୱନାଥ କବିରାଜ କହନ୍ତି– ଦୀର୍ଘ ସମାସ ଓ ଓଜଗୁଣ ପ୍ରକାଶକ ବର୍ଣ୍ଣଦ୍ୱାରା ରଚିତ ଆଡମ୍ବରପୂର୍ଣ୍ଣ ରଚନା ହେଉଛି ଗୌଡୀ ରୀତି । ବୈଦର୍ଭୀ ଓ ଗୌଡ଼ୀ ରୀତିରେ ପ୍ରଯୁକ୍ତ ବର୍ଣ୍ଣଗୁଡ଼ିକ ବ୍ୟତୀତ ଅବଶିଷ୍ଟ ବର୍ଣ୍ଣଯୁକ୍ତ ପାଂଚ ବା ଛ' ପଦ ବିଶିଷ୍ଟ ସମାସ ଦ୍ୱାରା ସଂଶ୍ଳିଷ୍ଟ ରଚନା ହେଉଛି । ପାଂଚାଳୀ ରୀତିର ଅନ୍ତର୍ଭୁକ୍ତ ଏବଂ ବୈଦର୍ଭୀ ଓ ପାଞ୍ଚାଳୀ ରୀତି ଯେଉଁଠାରେ ମିଶ୍ରିତ ଭାବରେ ପ୍ରୟୋଗ କରାଯାଏ, ସେଠାରେ ଲାଟୀ ରୀତି ହୋଇଥାଏ । ଅର୍ଥାତ୍ କାବ୍ୟ ରଚନା ସମୟରେ ଲେଖକ ରୀତି ସଂପର୍କରେ ସଚେତନ ରହି ଉପଯୁକ୍ତ ବର୍ଣ୍ଣ ବ୍ୟବହାର କରିଥାଏ ଏବଂ ଉପଯୁକ୍ତ ପଦ ସଂଘଟନା କରେ । ଫଳରେ ନୂଆ ନୂଆ ଗଠିତ ହୁଏ ଓ ଭାଷାକୁ ନୂତନ ନୂତନ ଶବ୍ଦର ଆଗମନ ଘଟେ । ରୀତି ପ୍ରୟୋଗ ଦ୍ୱାରା ଓଡ଼ିଆ ଭାଷାକୁ ଅନେକ ନୂତନ ଶବ୍ଦ ଆଗମନର ବାଟ ଫିଟିଛି । ନିମ୍ନରେ ତାହାର ଏକ ଦୃଷ୍ଟାନ୍ତ ପ୍ରଦାନ କରାଗଲା ।

କଳାକର ହାସୀ, କମଳ ସୁବାସୀ କ୍ରୀଡ଼ା–ମାନସ କଳହଂସୀ ।
କୃଷ୍ଣ ମନମୀନ–ଆକର୍ଷ ବଡ଼ଶୀ କଂଦର୍ପଦର୍ପ–ତମଶଶୀ ।
ସୁଜନେ, କାମତରଂଗିଣୀ ସରଣୀ ।
କରନ୍ତେ ଗମନ ଅତି ଶୋଭାବନ ଦିଶଇ ଧରଣୀ ସରଣୀ ।

(ରସକଲ୍ଲୋଳ)

୩.୧.୩.: 'ଧ୍ୱନି' ରୀତି ସାହିତ୍ୟର ଏକ ମାନକ ରୂପରେ ବିବେଚିତ ହୋଇ ଓଡ଼ିଆ ଭାଷାର ଅର୍ଥତାତ୍ତ୍ୱିକ ଦିଗ ବେଶ୍ ପ୍ରଭାବିତ ତଥା ସମୃଦ୍ଧ କରିପାରିଛି । ଆନନ୍ଦ ବର୍ଦ୍ଧନ ଏହି ତତ୍ତ୍ୱର ପ୍ରବର୍ତ୍ତକ । ସେ ଏହାକୁ ସାହିତ୍ୟର ଆତ୍ମା ବୋଲି କହିଲେ । ତାଙ୍କ ମତରେ ଯାହା କାବ୍ୟରେ ଧ୍ୱନିତ କରେ ବା କରାଏ ସେହି ବ୍ୟଂଜକ ଅର୍ଥ ହେଉଛି ଧ୍ୱନି । ଏହାକୁ ଆଧାର କରି କାବ୍ୟକୁ ତିନି ଭାଗରେ ବିଭକ୍ତ କରାଯାଇଛି– ଯଥା– ଧ୍ୱନିକାବ୍ୟ, ଗୁଣୀ ଭୂତ ବ୍ୟଂଗ୍ୟ କାବ୍ୟ ଓ ଚିତ୍ର କାବ୍ୟ । ଯେଉଁ କବି କୃତିରେ ବାଚ୍ୟାର୍ଥ ଅପେକ୍ଷା ଅଧିକ ଚମତ୍କାରପୂର୍ଣ୍ଣ ବ୍ୟଂଗ୍ୟାର୍ଥ ଥାଏ ତାହା ଧ୍ୱନି କାବ୍ୟ । ଏହାକୁ

ମଧ୍ୟ ଉତ୍ତର କାବ୍ୟ କୁହାଯାଏ । ଯେଉଁଠି ବାଚ୍ୟାର୍ଥ ଅପେକ୍ଷା ବ୍ୟଂଗ୍ୟାର୍ଥ ଗୌଣ ତଥା କମ୍ ଚମତ୍କାରିତା ପ୍ରକାଶ ପାଏ ସେଠାରେ ଗୁଣୀଭୂତ ବ୍ୟଂଗ୍ୟକାବ୍ୟ ହୁଏ, ଯାହାର ଧନ୍ୟନାମ ହେଉଛି ମଧ୍ୟମ କାବ୍ୟ, ଯେଉଁଠି ବ୍ୟଂଗ୍ୟାର୍ଥ ନଥାଏ ବା ଥିଲେ ମଧ୍ୟ ନଥିଲା ସହିତ ସମାନ ସେହି କାବ୍ୟ ଚିତ୍ରକାବ୍ୟ ବା ଅଧମ କାବ୍ୟ । ତେଣୁ ଓଡ଼ିଆ ରୀତି କାବ୍ୟ କାରମାନେ ନିଶ୍ଚିତ ଭାବରେ ଉତ୍ତମ କାବ୍ୟ ବା ଚମତ୍କାର । ଅର୍ଥ ବ୍ୟଂଜକ କାବ୍ୟ ରଚନା ନିମନ୍ତେ ଚେଷ୍ଟା କରିଥିବେ । ଓଡ଼ିଆ ରୀତି ସାହିତ୍ୟରେ ଅନେକ ଉତ୍ତମ କାବ୍ୟ ଦେଖିବାକୁ ମିଳେ । ଏଠାରେ ତାହାର ଏକ ଦୃଷ୍ଟାନ୍ତ ଦିଆଯାଇପାରେ ।

ବଢ଼ାଇଦେଲେ ପୟର ଭାବଗ୍ରାହୀ ରଘୁବୀର
ପୟର କ୍ଷାଳିତ କରି ବସନେ ପୋଛି
ବ୍ରହ୍ମାରେ ଧୌତ ଯେ ପଦ ନୋହିଛି ଶିବେ ବିଷାଦ
ନପାଇ ଚରଣାମୃତ ପାନକୁ ଇଛି
ବିଜ୍ଞାନୀ କୈବର୍ତ୍ତ ହୋଇଲା
ବିଶ୍ୱେ ପତିତ ପାବନ ନାମ ରହିଲା ।

(ବୈଦେହୀଶ ବିଳାସ)

ଏହାର ବାଚ୍ୟାର୍ଥ ବ୍ୟତୀତ ବ୍ୟଂଗ୍ୟାର୍ଥଟି ହେଉଛି ବ୍ରହ୍ମା ଓ ଶିବଂଙ୍କଠାରୁ କୈବର୍ତ୍ତର ମହତ୍ୱ ବେଶି । ରୀତି ସାହିତ୍ୟରେ ଏହି ଧ୍ୱନିର ପ୍ରୟୋଗ ଓଡ଼ିଆ ଭାଷାର ଅର୍ଥ ଅଭିବ୍ୟକ୍ତିକୁ ବେଶ୍ ପ୍ରଭାବିତ କରିପାରିଛି । ଗଦ୍ୟ ସାହିତ୍ୟରେ ଅର୍ଥର ଚମତ୍କାରିତା ମଧ୍ୟ ପ୍ରକାଶ ପାଇଛି । ଆଧୁନିକ ଓଡ଼ିଆ ଗଳ୍ପ ଉପନ୍ୟାସ ଓ ନାଟକରେ ଏପରି ଅର୍ଥ ଅଭିବ୍ୟକ୍ତିର ବହୁଳ ପ୍ରୟୋଗ ଦେଖିବାକୁ ମିଳେ ।

୩.୧.୪: କୁନ୍ତକ କହନ୍ତି– ବକ୍ରୋକ୍ତିଃ କାବ୍ୟ ଜୀବିତମ୍ ଅର୍ଥାତ୍ କାବ୍ୟକାର ବକ୍ରୋକ୍ତିକୁ କାବ୍ୟର ଜୀବନ ବା ପ୍ରାଣ ଭାବରେ ପ୍ରତିଷ୍ଠା କରି ତା'ର ସାହିତ୍ୟ ସର୍ଜନା କରିବା ଉଚିତ । ଭାଷାକୁ ସରସ ସୁନ୍ଦର କରିବାରେ ବକ୍ରୋକ୍ତିର ବେଶ୍ ଗୁରୁତ୍ୱ ରହିଛି । ବକ୍ର ଉକ୍ତି ହେଉଛି ବକ୍ରୋକ୍ତି , ବନେଇ ଚୁନେଇ କଥାଟିଏ କହିବା ବକ୍ରୋକ୍ତି, ଯାହାଦ୍ୱାରା ସାଧାରଣ କଥାକୁ ଅଲୌକିକ ଭାବରେ ପ୍ରକାଶ କରାଯାଇପାରେ । ବକ୍ରୋକ୍ତିର ପ୍ରବର୍ତ୍ତକ କୁନ୍ତକ, ତାଙ୍କ ମତରେ– ବକ୍ରୋକ୍ତିରେବ ବୈଦଗ୍ଧ୍ୟ ଭଂଗୀଭଣତିରୁଚ୍ୟତେ । ଅର୍ଥାତ୍ କବିତ୍ୱପୂର୍ଣ୍ଣ ଦକ୍ଷତାଦ୍ୱାରା ପରିକଳ୍ପିତ ବା ଚମତ୍କାରପୂର୍ଣ୍ଣ ବଚନ ବିନ୍ୟାସ ରୀତିକୁ ବକ୍ରୋକ୍ତି କୁହାଯାଏ । ଓଡ଼ିଆ ରୀତି ସାହିତ୍ୟରେ ଏହାର ବହୁଳ ବ୍ୟବହାର ଦେଖିବାକୁ ମିଳେ । ଯଥା–

ଝାଉଁଳିବା ନବ ତମାଳ ରମା, ଝିଂକିଆଣି ଅଂଗେ କଲଣି ଜମା ।
ଝଡ଼ିବ ବଳ କୋମଳ ଛାତିରୁ, ଝଷଧ୍ୱଜପୀଡ଼ା ଝାଂଜି ତାତିରୁ ।

(କିଶୋର ଚନ୍ଦ୍ରାନନ ଚଂପୂ)

ଏଠାରେ କୃଷ୍ଣଙ୍କର ଯେଉଁ ବିରହ ବିବଶ ଚେହେରା ଚିତ୍ର ପ୍ରଦାନ କରାଯାଇଛି, ତାହା ଅତ୍ୟନ୍ତ ଚମତ୍କାର ଓ ଏହା ବକ୍ରୋକ୍ତି ମାଧ୍ୟମରେ ଲଳିତା ମୁଖରେ ପ୍ରକାଶିତ । ଏହା ପରବର୍ତ୍ତୀ କାଳରେ ଓଡ଼ିଆ ଗଳ୍ପ, ଉପନ୍ୟାସ, ନାଟକ ସମେତ କାବ୍ୟ କବିତାକୁ ପ୍ରଭାବିତ କରିଛି ଓ ସାଧାରଣ କଥୋପକଥନରେ ମଧ୍ୟ ଏହା ପରିଦୃଷ୍ଟ ହୁଏ । ଓଡ଼ିଆ ଶବ୍ଦତତ୍ତ୍ୱ , ବାକ୍ୟ ତତ୍ତ୍ୱ ଓ ଅର୍ଥତତ୍ତ୍ୱ ବିଚାରରେ ଏହାର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି ଓ ଏହା ଓଡ଼ିଆ ଭାଷାକୁ ସମୃଦ୍ଧ କରିଛି ।

୩.୧.୫: ଅଳଂକାର ପ୍ରୟୋଗ ରୀତି ସାହିତ୍ୟର ଅଭିନ୍ନ ଓ ଅନିବାର୍ଯ୍ୟ ଅଂଗ । ଅଳଂକାର ଦ୍ୱାରା ସାହିତ୍ୟ ଓ ଭାଷା ବିମଣ୍ଡିତ ହୁଏ । ବାଣୀର ବିଭୂଷଣ ହେଉଛି ଅଳଂକାର । କାବ୍ୟରେ ଅଂଳକାର ପ୍ରୟୋଗ ସଂପର୍କରେ ଆଲୋଚନା କରିଥିବା ଆଚାର୍ଯ୍ୟଂକ ମଧ୍ୟରେ ଭାମହଂକ ନାମ ସର୍ବାଦୌ ଉଲ୍ଲେଖଯୋଗ୍ୟ । ଅଳଂକାର ପ୍ରୟୋଗ ଯେକୌଣସି ଭାଷାର ଶବ୍ଦ ଓ ଅର୍ଥର ବିକାଶ ସାଧନ କରେ । ଭାମହଂକ ମତରେ ଶବ୍ଦ ଓ ଅର୍ଥର ବକ୍ରତା ବା ବୈଚିତ୍ର୍ୟର ନାମ ହେଉଛି ଅଳଂକାର ।

ଅଳଂକାର ତ୍ରିବିଧ, ଶବ୍ଦାଳଂକାର, ଅର୍ଥାଳଂକାର ଓ ଉଭୟାଳଂକାର । ଶବ୍ଦାଳଂକାର ମାଧ୍ୟମରେ ଭାଷାର ଶବ୍ଦ ଭଂଡ଼ାରରେ ବିକାଶ ଘଟେ । ଅର୍ଥାଳଂକାର ମାଧ୍ୟମରେ ଅର୍ଥ ଅଭିବ୍ୟକ୍ତିରେ ବିବିଧତା ତଥା ବୈଚିତ୍ର୍ୟ ପରିଲକ୍ଷିତ ହୁଏ ।

ଶବ୍ଦାଳଂକାରରେ ଶବ୍ଦ ପ୍ରୟୋଗର ଚମତକାରିତା ଦେଖିବାକୁ ମିଳେ । ଏହାର ଅନେକ ବିଭାଗ ରହିଅଛି, ଯଥା– ଅନୁପ୍ରାସ, ଯମକ, ଶ୍ଳେଷ ଓ ବକ୍ରୋକ୍ତି । ସ୍ୱର ବୈଷମ୍ୟ ଥାଇ ଏକ ପ୍ରକାର ବ୍ୟଂଜନବର୍ଣ୍ଣ (ଧ୍ୱନି)ର ପୁନଃପୁନଃ ଆବୃତ୍ତି ଘଟିଲେ ଅନୁପ୍ରାସ ଅଳଂକାର ହୁଏ । ଏହା ପ୍ରଧାନତଃ ପାଂଚ ଭାଗରେ ବିଭକ୍ତ । ଯଥା– ବୃତ୍ୟନୁପ୍ରାସ, ଛେକାନୁପ୍ରାସ, ଶ୍ରୁତ୍ୟନୁପ୍ରାସ, ଲାଟାନୁପ୍ରାସ ଓ ଅନ୍ତ୍ୟାନୁପ୍ରାସ । ଏହାର କେତେକ ଉଦାହରଣ ନିମ୍ନରେ ପ୍ରଦତ୍ତ ହେଲା–

ଦେଖି ନବ କାଳିକା ବକାଳିକା ମାଳିକା
ଆଳି କାଳିକା–କାନ୍ତସ୍ମରି
ରକ୍ଷା କେମନ୍ତ କରି କରିବା ମତ୍ତକରି–
ଗତିକି ଏମନ୍ତ ବିଚାରି, ସେ ସହଚରୀ । (ଲାବଣ୍ୟବତୀ)
କାଳିଂଦୀ କୂଳିଆ କଦଂବମୂଳିଆ କେକିପୁଚ୍ଛ ଚାରୁ ଚୂଳିଆ
କଜ୍ଜ୍ୱଳ କାଳିଆ କାଇଂଚମାଳିଆ ମଣିମକରକୁଂଡ଼ଳିଆ
କଳିତ ଲଳିତ ପୀତଦୁକୂଳିଆ
କଳଂକ ରହିତ କଳାକରଜିତ ସୁଂଦର ମୁଖମଂଡ଼ଳିଆ ।

(ରସକଲ୍ଲୋଳ)

ଓଡ଼ିଆ ରୀତି ସାହିତ୍ୟରେ ଅନୁପ୍ରାସ ବେଶ୍ ଗୁରୁତ୍ୱପୂର୍ଣ୍ଣ ଭୂମିକା ବହନ କରିଛି । ଗୋଟିଏ ଗୋଟିଏ ବର୍ଣ୍ଣ (ଧ୍ୱନିକୁ) ପ୍ରତ୍ୟେକ ପାଦର ଆଦିରେ ବା ପ୍ରାନ୍ତରେ ଅଥବା ଉଭୟ ଆଦି-ପ୍ରାନ୍ତରେ ରଖି କାବ୍ୟ ରଚନା କରି ଥିବାର ଦେଖାଯାଏ । ରସକଲ୍ଲୋଳ କାବ୍ୟ 'କ'ଆଦିରେ, ବୈଦେହୀଶ ବିଳାସ 'ବ' ଆଦିରେ, ସୁଭଦ୍ରା ପରିଣୟ 'ସ' ଆଦିରେ ରଚିତ ହୋଇଥିବା ସ୍ଥଳେ କଳାକଉତୁକ ଆଦି ଓ ଅନ୍ତ 'କ' ଅକ୍ଷର ବା ବର୍ଣ୍ଣ ରହି ରଚିତ । ଏତଦ୍‌ବ୍ୟତୀତ ଅଭିମନ୍ୟୁ ସାମନ୍ତ ସିହାରଂକ ବିଦଗ୍ଧଚିନ୍ତାମଣିରେ ଏହାର ବହୁଳ ପ୍ରୟୋଗ ଦେଖିବାକୁ ମିଳେ । ଏହା ଓଡ଼ିଆ ଶବ୍ଦ ଭଂଡ଼ାରକୁ କିଛି କମ୍ ସମୃଦ୍ଧ କରି ନାହିଁ ।

କାବ୍ୟର ବାକ୍ୟ ମଧ୍ୟରେ ସମାନ ରୂପ ବିଶିଷ୍ଟ ଭିନ୍ନାର୍ଥବୋଧକ ଶବ୍ଦମାନଙ୍କର ବାରବାର, ବ୍ୟବହାରକୁ ଯମକ ଅଳଂକାର କୁହାଯାଏ । ଏହା ଆଦ୍ୟ ଯମକ, ମଧ୍ୟ ଯମକ, ପ୍ରାନ୍ତ ଯମକ, ଯୁଗ୍ମ ଯମକ, ମାଳ ଯମକ, ସର୍ବଯମକ ପରି ବିଭିନ୍ନ ଭେଦରେ ବିଭକ୍ତ । ଓଡ଼ିଆ ରୀତି ସାହିତ୍ୟରେ ଏହାର ପ୍ରଚାର ପ୍ରୟୋଗ ଦେଖିବାକୁ ମିଳେ । ଯଥା-

ଦେଖରେ ନଳିନୀ, ନଳିନୀ, ନଳିନୀରେ ପୂରିତ ।
ଭ୍ରମନ୍ତି ଭ୍ରମରେ ଭ୍ରମରେ ଏ ଶୋଭିତ । (ଲାବଣ୍ୟବତୀ)
ଅହିମ କର ତାପ ନାଶେ ଶୋଭା ସାରସ ଚକ୍ରେ
ମହିମ କର ତାପ ନାଶେ ଶୋଭା ସାରସ ଚକ୍ରେ

(ଲାବଣ୍ୟବତୀ)

ଏହା ଓଡ଼ିଆ ଭାଷାର ଶବ୍ଦ ଭଣ୍ଡାରକୁ ସମୃଦ୍ଧ କରିବା ସହିତ ଅର୍ଥ ଅଭିବ୍ୟକ୍ତିରେ ବୈଚିତ୍ର୍ୟ ଆଣିପାରିଛି ।

ଏକାଧିକ ଅର୍ଥବୋଧକ ଶବ୍ଦ ଥରେ ମାତ୍ର ବ୍ୟବହୃତ ହୋଇ ଭିନ୍ନ ଭିନ୍ନ ଅର୍ଥ ପ୍ରକାଶ କଲେ ଶ୍ଳେଷାଳଂକାର ହୁଏ । ଏହା ତ୍ରିବିଧ- ସଭଂଗଶ୍ଳେଷ, ଅଭଙ୍ଗ ଶ୍ଳେଷ ଓ ସଭଂଗାଭଂଗ ଶ୍ଳେଷ । ଏହା ଓଡ଼ିଆ ରୀତି ସାହିତ୍ୟର ଏକ ବିଶିଷ୍ଟ ଅଂଗ । ଏହାର ଏକ ଦୃଷ୍ଟାନ୍ତ ବୈଦେହୀଶ ବିଳାସରୁ ପ୍ରଦାନ କରାଗଲା ।

ବାବୁ ନାକଶିରୀ ଦାନ ଯୋଗ୍ୟ ଯୋଷାକୁ
ବିହର କାନନ କରି ଆଲିଙ୍ଗନକୁ

ପ୍ରଥମ ଅର୍ଥ- ବାବୁ (ଲକ୍ଷ୍ମଣ), ନାକ (ସ୍ୱର୍ଗ), ଶିରୀ (ସୁଖ), ଦାନଯୋଗ୍ୟ ଯୋଷା (ରମଣୀ)କୁ ଆଲିଙ୍ଗନ କରି କାନନରେ ବିହାର କର ।

ଅନ୍ୟ ଅର୍ଥରେ- ବାବୁ (ଲକ୍ଷ୍ମଣ) ନାକ (ନାସା) ଶିରୀ (ସୌନ୍ଦର୍ଯ୍ୟ) ଦାନ (ଛେଦନ) ଯୋଗ୍ୟ ଯୋଷା (ରମଣୀ)କୁ ଆଲିଙ୍ଗନ ନକରି କାନ(କୁ) ବିହର (ହରଣ କର ବା ଛେଦନ କର) ।

ଶ୍ଳେଷ ମଧ୍ୟ ଭାଷାକୁ ସମୃଦ୍ଧ କରିବାରେ ସହାୟକ ହୁଏ ।

ବକ୍ତା ଦ୍ୱାରା ବ୍ୟବହୃତ ବାକ୍ୟ ବା ଶବ୍ଦକୁ ଶ୍ରୋତା ଭିନ୍ନ ଅର୍ଥରେ ଗ୍ରହଣ କଲେ ସେଠାରେ ବକ୍ରୋକ୍ତି ଅଳଂକାର ହୋଇଥାଏ । ଏହା ଦ୍ୱିବିଧ ଶ୍ଳେଷ ବକ୍ରୋକ୍ତି ଓ କାକୁ ବକ୍ରୋକ୍ତି । ଶ୍ଳେଷ ବକ୍ରୋକ୍ତିରେ ବକ୍ତାର ଅଭିପ୍ରେତ ଅର୍ଥଦ୍ୟୋତକ ଶବ୍ଦ ବା ବାକ୍ୟକୁ ଶ୍ରୋତା ଭିନ୍ନ ଅର୍ଥରେ ଗ୍ରହଣ କରିଥାଏ । କାକୁ ବକ୍ରୋକ୍ତିରେ ବକ୍ତାର କଣ୍ଠସ୍ୱର ଯୋଗୁଁ ଶ୍ରୋତା ଉଚ୍ଚାରିତ ଶବ୍ଦ ବାକ୍ୟର ଭିନ୍ନ ଅର୍ଥ ଗ୍ରହଣ କରେ । ଏହା ଶବ୍ଦର ଅର୍ଥ ଅଭିବ୍ୟକ୍ତି ତଥା ବାକ୍ୟର କଥନ ଶୈଳୀରେ ବୈଶିଷ୍ଟ୍ୟ ପ୍ରବର୍ତ୍ତନ କରେ ।

ଅର୍ଥାଂଳଂକାର ଅର୍ଥ ବୈଚିତ୍ର୍ୟକୁ ନେଇ କଳ୍ପିତ । ଏହା ବହୁଧା, ଉପମା, ରୂପକ, ଉତ୍‌ପ୍ରେକ୍ଷା, ବ୍ୟତିରେକ, ପ୍ରତୀପ, ସମାସୋକ୍ତି, ଦୃଷ୍ଟାନ୍ତ, ଉଲ୍ଲେଖ, ଅପହ୍ନୁତି, ନିଦର୍ଶନା, ଅତିଶୟୋକ୍ତି, ଭ୍ରାନ୍ତିମାନ, ନିଶ୍ଚୟ, ଦୀପକ, ପରିଣାମ, ବିଭାବନା, ଅସଂଗତି, ବିଷମ, ଅର୍ଥାନ୍ତର ନ୍ୟାସ, ସ୍ୱଭାବୋକ୍ତି ଇତ୍ୟାଦି ଏହାର ଗୋଟିଏ ଗୋଟିଏ ବିଭାଗ । ଅନ୍ୟାନ୍ୟ ଭାଷା ପରି ଓଡ଼ିଆ ରୀତି ସାହିତ୍ୟରେ ଅର୍ଥାଳଂକାରର ପ୍ରୟୋଗ ପଦ୍ରେ ପଦ୍ରେ ଦେଖିବାକୁ ମିଳେ । ଏହାର କେତୋଟି ଦୃଷ୍ଟାନ୍ତ ପ୍ରଦାନ କରାଗଲା ।

ଅଣିମାଦି ସୁଖଦାୟୀ ଶୋଇଅଛି ଅଣିଆଇ
ପଲ୍ୟଂକ ଅଂକରେ ଦିଶେ ଏମନ୍ତ ଶୋଭା ।
ରସାଣ ରଜତ ବାଡ଼େ କନକଲତାକି ଜଡ଼େ
ବିଶଦ ଘନରେ କିସେ ଚପଳା ପ୍ରଭା ।
ବାମକର କପୋଳ ତଳେ
କେଂଦୁ ପଲ୍ଲବେ ଥୁଆ କି ଫୁଲ୍ଲ କମଳ ।
(ଲାବଣ୍ୟବତୀ)

ଧୀର ଚକ୍ର ହୃଦପଦ୍ମ ମିହିର । ରସିକ ରସ ରତନ ଭଂଡ଼ାର ।
ଗ୍ରାହକ ପ୍ରେମ ବଣିଜ ପସରା । କାମି-କାମଦା ଚିନ୍ତାମଣି ପରା
ଏ ଛାଂଦ ଗାରିମା ଗୋ ପ୍ରୀତି ଆନଂଦ ସିଂଧୁକୁ ଚଂଦ୍ରମା ।
(ବିଦଗ୍ଧ ଚିନ୍ତାମଣି)

କବିତ୍ୱ ରସ ଉତ୍ତମ ଗୋକ୍ଷୀର । କରି ତହିଁ ସଂଗେ ସ୍ନେହଶାକର ।
କର୍ଣ୍ଣତୁଂଡ଼ରେ ଯେ କରଇ ପାନ । କିଛି ହିଁ ସ୍ୱାଦୁ ଜାଣଇ ସେ ଜନ ।
କୁତ୍ସିତ ଯା ବୁଦ୍ଧି, କରେ ତା'ବଚନ ଆଂବିଳଦଧି ।
(ରସକଲ୍ଲୋଳ)

ଓଡ଼ିଆ ରୀତି ସାହିତ୍ୟର ଏହି ଅପୂର୍ବ ଆଳଂକାରିକ ପ୍ରୟୋଗ ଓଡ଼ିଆ ଶବ୍ଦ ଭଂଡ଼ାର, ବାକ୍ୟ ବିନ୍ୟାସ ଓ ଅର୍ଥ ଅଭିବ୍ୟକ୍ତିକୁ ସମୃଦ୍ଧ କରିବାରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କରିପାରିଛି ।

୪.୦: ବହୁଶାସ୍ତ୍ର ଦର୍ଶିତା ଓଡ଼ିଆ ରୀତି ସାହିତ୍ୟର ଅନ୍ୟ ଏକ ବଳିଷ୍ଠ ଦିଗ । ପ୍ରାୟତଃ ପ୍ରତ୍ୟେକ ଓଡ଼ିଆ ରୀତି ସାହିତ୍ୟ ସାଧକଙ୍କ ନିକଟରେ ରହିଥିଲା କବିତ୍ୱ ଓ ପାଂଡ଼ିତ୍ୟ। ସେମାନେ ସମସ୍ତେ ଥିଲେ ବହୁ ଶାସ୍ତ୍ରଦର୍ଶୀ, ଫଳରେ ଓଡ଼ିଆ ସାହିତ୍ୟ କେବଳ ସମୃଦ୍ଧ ହୋଇ ନାହିଁ ଭାଷା ମଧ୍ୟ ସମୃଦ୍ଧ ହୋଇଛି । ବେଦ, ଉପନିଷଦ, ବିଭିନ୍ନ ପୁରାଣ, ଭାଗବତ, ଗୀତା, ସଂସ୍କୃତ କାବ୍ୟ ସାହିତ୍ୟ, ଅଳଂକାର ଶାସ୍ତ୍ର ଇତ୍ୟାଦି ଦ୍ୱାରା ଓଡ଼ିଆ ଭାଷା ସମୃଦ୍ଧ ହୋଇଛି। ଓଡ଼ିଆ ଭାଷାକୁ ଅନେକ ନୂତନ ନୂତନ ଶବ୍ଦର ଆଗମନ ଘଟିଛି। ବିଦଗ୍ଧ ଚିନ୍ତାମଣିର ପ୍ରଥମ ଛାନ୍ଦ ଏହାର ପ୍ରକୃଷ୍ଟ ଉଦାହରଣ। ଯଥା–

ଉତ୍‌ପତି ପାଳନାନ୍ତ ତୋ ଭ୍ରୂଭଂଗୀ ବିକାରେ।
ଉତପ୍ଳୁତ ତନ୍ତୁବାୟ ସୂତ୍ର ପରକାରେ ଯେ ।।
(ବିଦଗ୍ଧ ଚିନ୍ତାମଣି)

ସଂସ୍କୃତ ଭାଗବତରେ ଅବିକଳ ରହିଛି–
ନୈତଚ୍ଚିତ୍ରଂ ଭଗବତି ହ୍ୟନନ୍ତେ ଜଗଦୀଶ୍ୱରେ
ଓତପ୍ରୋତମିଦଂ ଯସିଂସ୍ତନ୍ତୁଷ୍ୱଂଗ ଯଥାପଟଃ
ଭାଗ–୧୦/୧୫।୩୫

କିଂବା

ଉର୍ଣ୍ଣନାଭ ବତ ଖେଳୁ ଇଚ୍ଛାଶକ୍ତି ବଳେ।
ଉଭବ ହୋଇ ତୁ ଧର୍ମ ସ୍ଥାପୁ କାଳେ କାଳେ ହେ।

ଶ୍ରୀମଦ୍ ଭାଗବତ ଗୀତାରେ ଅଛି–
ଯଦା ଯଦା ହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ।
ଅଭ୍ୟୁତ୍‌ଥାନମ ଧର୍ମସ୍ୟ ତଦାତ୍ମାନଂ ସୃଜମ୍ୟହମ୍।
ପରିତ୍ରାଣାୟ ସାଧୁନାଂ ବିନାଶାୟ ଚ ଦୁଷ୍କୃତାମ୍ ।
ଧର୍ମ ସଂସ୍ଥାପନାର୍ଥାୟ ସଂଭବାମି ଯୁଗେ ଯୁଗେ।
(୪/୭–୮)

ଓଡ଼ିଆ ରୀତି ସାହିତ୍ୟରେ ସ୍ଥାନ ପାଇଥିବା ବିଭିନ୍ନ ଋତୁ ବର୍ଣ୍ଣନା, ନାରୀ ଓ ପୁରୁଷର ରୂପ ବର୍ଣ୍ଣନା, ସରୋବର ବର୍ଣ୍ଣନା, ବନ ଉପବନ ବର୍ଣ୍ଣନା, ପ୍ରାସାଦ ବର୍ଣ୍ଣାନାଦି ଓଡ଼ିଆ ଭାଷାକୁ କିଛି କମ୍ ସମୃଦ୍ଧ କରି ନାହିଁ ।

୫.୦: ପ୍ରାଚୀନ ଭାରତର ଅର୍ଥତତ୍ତ୍ୱ ବିଚାର ଦୃଷ୍ଟିରୁ ଦେଖିଲେ ଓଡ଼ିଆ ରୀତି ସାହିତ୍ୟ ବେଶ ମହତ୍ୱପୂର୍ଣ୍ଣ। ପ୍ରାଚୀନ ସାହିତ୍ୟ ସମୀକ୍ଷକମାନେ ଶବ୍ଦର ଅର୍ଥ, ତ୍ରିବିଧ ବୋଲି କହିଛନ୍ତି । ଯଥା ବାଚ୍ୟାର୍ଥ, ଲକ୍ଷାର୍ଥ ଓ ବ୍ୟଂଗ୍ୟାର୍ଥ। ଏହି ତ୍ରିବିଧ ଅର୍ଥର ଅବବୋଧ ବା ପରିପ୍ରକାଶ ନିମନ୍ତେ ତିନି ପ୍ରକାର ଶକ୍ତିର ପରିକଳ୍ପନା କରାଯାଇଛି । ସେଗୁଡ଼ିକ ହେଲା– ଅଭିଧାଶକ୍ତି, ଲକ୍ଷଣା ଶକ୍ତି ଓ ବ୍ୟଂଜନା ଶକ୍ତି ।

୫.୧: ଯେଉଁ ଶବ୍ଦ ଶକ୍ତି ଦ୍ୱାରା ସାଂକେତିକ ଅର୍ଥ, ମୁଖ୍ୟ ଅର୍ଥ, ପ୍ରଥମ ଅର୍ଥ, ଅଭିଧେୟାର୍ଥ ବା ବାଚ୍ୟାର୍ଥର ପ୍ରତୀତି ଘଟେ ତାହା ଅଭିଧା ଶକ୍ତି। ଏହି ଶବ୍ଦଗୁଡ଼ିକ ବାଚକ ଶବ୍ଦ ରୂପେ ପରିଚିତ। ଓଡ଼ିଆ ରୀତି ସାହିତ୍ୟରେ ପ୍ରଚଳିତ ଗୋରୁ, ଘୋଡ଼ା, ଚଂଦ୍ର, ସୂର୍ଯ୍ୟ, ଘଟ, ଆଂବ, ବାଂଧ ଇତ୍ୟାଦି ଶବ୍ଦ ଏହି ବର୍ଗର ଅନ୍ତର୍ଭୁକ୍ତ।

୫.୨: ଯେଉଁ ଶକ୍ତି ଦ୍ୱାରା ଶବ୍ଦର ଅଭିଧା ଶକ୍ତି ଦ୍ୱାରା ନିଷ୍ପନ୍ନ ଅର୍ଥ ଅସଂଗତ ହୋଇ ରୂଢ଼ି କିଂବା ପ୍ରୟୋଜନାର୍ଥ (ମୁଖ୍ୟାର୍ଥ ସହିତ ସଂବଧାନ୍ୱିତ) ଅନ୍ୟ ଗୋଟିଏ ଅର୍ଥର ପ୍ରୀତୀତି ଘଟେ, ତାହା ଲକ୍ଷଣା ଶକ୍ତି। ଓଡ଼ିଆ ରୀତି ସାହିତ୍ୟରେ ଏପରି ଶବ୍ଦ ପ୍ରୟୋଗ ଅନେକତ୍ର ପରିଦୃଷ୍ଟ ହୁଏ।

୫.୩: ଅଭିଧା, ଲକ୍ଷଣା ଓ ତାତ୍ପର୍ଯ୍ୟଶକ୍ତି ସ୍ୱସ୍ୱଅର୍ଥ ପ୍ରକାଶ କରି ନିବୃତ୍ତ ହେଲେ, ଅନ୍ୟ ଏକ ସୂକ୍ଷ୍ମ ତଥା ଚମତ୍କାର ଅର୍ଥ ପ୍ରକାଶ କରିବା ପାଇଁ ଯେଉଁ ବୃତ୍ତି ବା ଶକ୍ତିକୁ ସ୍ୱୀକାର କରାଯାଏ, ତାହା ହେଉଛି ବ୍ୟଂଜନା ଶକ୍ତି । ଏହା ଦ୍ୱିବିଧ, ଶାବ୍ଦୀ ବ୍ୟଂଜନା ଓ ଆର୍ଥୀକ ବ୍ୟଂଜନା । ଏହା ଦ୍ୱାରା ଯେଉଁ ଅର୍ଥ ପ୍ରକାଶିତ ହୁଏ, ତାହାକୁ ବ୍ୟଂଗ୍ୟାର୍ଥ କୁହାଯାଏ। ଏହାକୁ କାବ୍ୟର ଆତ୍ମା ଭାବରେ ଗ୍ରହଣ କରାଯାଏ, ଓଡ଼ିଆ ରୀତି ସାହିତ୍ୟର ଏହା ଅନ୍ୟ ଏକ ବିଭବ।

୬.୦: ଓଡ଼ିଆ ରୀତି ସାହିତ୍ୟ ମାଧମରେ ଓଡ଼ିଆ କଥିତ ଭାଷା ଅନେକ ପରିମାଣରେ ଶବ୍ଦଗତ ସମୃଦ୍ଧି ଲାଭ କରିଛି। ଅନେକ କାବ୍ୟିକ ଶବ୍ଦ, ଉଚ୍ଚାଂଶ ଶବ୍ଦ ବା ମାର୍ଜିତ ଶବ୍ଦ ଓଡ଼ିଆ ଭାଷାକୁ ପ୍ରବେଶ କରିଛନ୍ତି । ଯଥା– ଅଣିମା, ଅଂବୁ, ଇଂଦୀବର, ଈକ୍ଷଣ, ଉର୍ଣ୍ଣନାଭ, ଉରଜ, ଓଷଧୀଶ, କୈତବ, କୁଚ, କଳାପ, କରକା, କୋରକ, କଟାକ୍ଷ, କୁରଂଗ, କୁଂଜର, କରୀ, ଗାତ୍ର, ଘୃତ, ଚର୍ବଣ, ଜଂଗମ, ଦ୍ରାକ୍ଷା, ଦନୁଜ, ଧେନୁ, ନଳିନି, ନ୍ୟାସ, ନାରିକେଳ, ନୃପ, ପରିପାକ, ପଂକଜ, ପ୍ରାବୃଟ, ପୀନ, ଫରମାସ, ପଂତୁରୀ, ପଂଜିତ, ବହିତ୍ର, ବସ୍ତା, ବ୍ୟୋମ, ବିଲୋକନ, ବଦରୀ, ବଲ୍ଲଭୀ, ବ୍ୟାଜ, ବାସବ, ମାର୍ଜାର, ମୃଗନହି, ମର୍କତ, ଲବଣୀ, ଶୁନୀ, ଶ୍ରବଣ, ସରଘା, ସଂପୁଟକ, ଷ୍ଟୋକ, ଲୟ ଇତ୍ୟାଦି ।

ଏହିପରି ଭାବରେ ଓଡ଼ିଆ ଭାଷାର ବିକାଶରେ ରୀତି ସାହିତ୍ୟ ସହାୟକ ହୋଇ ପାରିଛି ।

ଓଡ଼ିଆ ବିଭାଗ, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ

(ସୈଜନ୍ୟ : ନିର୍ଦ୍ଦେଶକ, ଓଡ଼ିଶା ଭାଷା ପ୍ରତିଷ୍ଠାନ, ଭୁବନେଶ୍ୱର–୧)

# ଓଡ଼ିଆ ଭାଷାର ଶାସ୍ତ୍ରୀୟ ମାନ୍ୟତା ଲାଭ ପରବର୍ତ୍ତୀ ଦାୟିତ୍ୱ

**ସଞ୍ଜୀବ ପାଇକରାୟ**

ପରିଶେଷରେ ଭାରତବର୍ଷର ଷଷ୍ଠ ଭାଷା ଭାବେ ଓଡ଼ିଆ ଭାଷା ଶାସ୍ତ୍ରୀୟ ମାନ୍ୟତା ପାଇବା ପରେ ଏହାର ଦୁଇହଜାର ବର୍ଷରୁ ଉର୍ଦ୍ଧ୍ୱ ସମୟର ସମୃଦ୍ଧ ପ୍ରାଚୀନତା, ଅକ୍ଷୁଣ୍ଣ ଧାରାବାହିକତା ଏବଂ ଗୌରବମୟ ସାଂସ୍କୃତିକ ଐତିହ୍ୟ ବିଷୟ ଆନୁଷ୍ଠାନିକଭାବେ ପ୍ରମାଣିତ ହୋଇଗଲା । ସଂସ୍କୃତ ସମେତ ଦକ୍ଷିଣ ଭାରତର ତାମିଲ୍, କନ୍ନଡ, ତେଲୁଗୁ ଓ ମାଲୟାଲାମ ପରି ପାଞ୍ଚୋଟି ଦ୍ରାବିଡ ଭାଷା ପରେ ପ୍ରଥମ ଭାରତୀୟ ଆର୍ଯ୍ୟ ଭାଷା ଭାବେ ଓଡ଼ିଆ ଏହି ତାଲିକାରେ ଯୋଡି ହୋଇଗଲା । ଏହି ଭାଷାକୁ ମୃତ୍ୟୁର ଯନ୍ତା ଭିତରକୁ ଠେଲି ଦେବା ପାଇଁ ଅନ୍ୟଭାଷୀ ଏବଂ ତତ୍କାଳୀନ ଅମଲାତନ୍ତ୍ରର ବ୍ୟକ୍ତି ବିଶେଷଙ୍କ ଦ୍ୱାରା ବହୁକାଳ ଧରି ଚାଲିଆସିଥିବା ଷଡଯନ୍ତ୍ରର ସମ୍ପୂର୍ଣ୍ଣ ଯବନିକାପାତ ହୋଇଗଲା ।

ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀରେ ରଚିତ ଭରତମୁନିଙ୍କ ନାଟ୍ୟଶାସ୍ତ୍ରରେ ଉଲ୍ଲିଖିତ 'ଉଡ୍ରବିଭାଷା', ବୁଦ୍ଧଦେବଙ୍କ ଦ୍ୱାରା ସୂଚିତ ତତ୍କାଳୀନ ଲିପିମାନଙ୍କ ମଧ୍ୟରେ ଉଡ୍ରଲିପି, ଅଦ୍ୟାବଧି ଆବିଷ୍କୃତ ଅଶୀଟି ପ୍ରାଚୀନ ଶିଳା ଓ ତାମ୍ରଲେଖର ଶବ୍ଦାବଳୀ, ଧଉଳୀ ଓ ଜଉଗଡରେ ଥିବା ଅଶୋକଙ୍କ ଶିଳାଲେଖ ଅଥବା ଖଣ୍ଡଗିରିରେ ଥିବା ହାତୀଗୁମ୍ଫା ପ୍ରସ୍ତରରେ ଖାରବେଳଙ୍କ ସମୟରେ ଖୋଦିତ ହୋଇଥିବା ଭାଷାରେ ବର୍ତ୍ତମାନ ପ୍ରଚଳିତ ଓଡ଼ିଆ ଶବ୍ଦ ସମୂହର ଉପସ୍ଥିତି ଏବଂ ଅନ୍ୟାନ୍ୟ ବହୁ ଗବେଷଣା ପ୍ରସୂତ ଉପାଦାନ ଆମ ସମୁଜ୍ୱଳ ପ୍ରାଚୀନତାକୁ ପ୍ରମାଣିତ କରିବାରେ ସହାୟକ ହେଲା ।

ଯେଉଁ ବିଦ୍ୱାନ, ଭାଷାବିତ୍, ଗବେଷକ, ସାହିତ୍ୟିକ, ବିଶେଷଜ୍ଞ ଗୋଷ୍ଠୀଙ୍କ ବଳିଷ୍ଠ ଯୁକ୍ତି ଓ ନିରନ୍ତର ଉଦ୍ୟମ ଏବଂ ସାଂସଦମାନଙ୍କର ବାରମ୍ବାର ସ୍ୱର ଉତ୍ତୋଳନର ଫଳ ସ୍ୱରୂପ ଆମଭାଷା ଆଜି ଯେଉଁ ଶୀର୍ଷରେ ପହଞ୍ଚିପାରିଛି, ସେଥିପାଇଁ ସେମାନେ ଅଭିନନ୍ଦନୀୟ । ସେହିପରି ରାଜ୍ୟ ସରକାର ଓ ମୁଖ୍ୟମନ୍ତ୍ରୀ ମହୋଦୟଙ୍କ ସମୁଚିତ ପଦକ୍ଷେପ ଏବଂ ଭାରତ ସରକାରଙ୍କର ସ୍ୱୀକୃତି ପାଇଁ ଧନ୍ୟବାଦ । ତେବେ, ଏହିପରି ଏକ ଐତିହାସିକ ସ୍ମରଣୀୟ ମୁହୂର୍ତ୍ତ ଓଡ଼ିଆ ଜାତି ପାଇଁ ଅନେକ ଦାୟିତ୍ୱ ଆଣି ଦେଇଛି । ସବୁଠାରୁ ଗୁରୁଦାୟିତ୍ୱ ରହିଛି ରାଜ୍ୟ ସରକାରଙ୍କର । ଯଦି ଆମେ ଅତୀତକୁ ଦେଖିବା, ଭାଷାଭିତ୍ତିକ ଓଡ଼ିଶା ରାଜ୍ୟ ଗଠନର ଅବ୍ୟବହିତ ପୂର୍ବରୁ ପଡୋଶୀ ବଙ୍ଗଳା, ହିନ୍ଦୀ ଓ ତେଲୁଗୁଭାଷୀମାନେ ଓଡ଼ିଆକୁ ଶିକ୍ଷା ଓ ଶାସନର ଭାଷା ନକରାଇ ଦେବା ପାଇଁ ଚକ୍ରାନ୍ତ ଜାରି ରଖିଥିଲେ । ୧୮୬୦ରୁ ୧୯୦୩ ମସିହା ପର୍ଯ୍ୟନ୍ତ ଏହି ଚକ୍ରାନ୍ତ ଅତ୍ୟନ୍ତ ବ୍ୟାପକ ଥିଲା । ଉତ୍କଳଗୌରବ ମଧୁସୂଦନ ଦାସଙ୍କ ସମର୍ଥ ନେତୃତ୍ୱରେ ତତ୍କାଳୀନ ବଙ୍ଗଳା ବିରୋଧୀ ଓଡ଼ିଆ ସୁରକ୍ଷା ଆନ୍ଦୋଳନର ନେତା ଆମ ସାହିତ୍ୟର ଯୁଗସ୍ରଷ୍ଟା, କଥା ସମ୍ରାଟ ଫକୀର ମୋହନ ସେନାପତି ଓ କର୍ମବୀର ଗୌରୀଶଙ୍କର ରାୟ, ହିନ୍ଦୀ ବିରୋଧୀ ଓଡ଼ିଆ ସୁରକ୍ଷା ଆନ୍ଦୋଳନର ନେତା ବଳଭଦ୍ର ସୂପକାର, ଶ୍ରୀପତି ମିଶ୍ର ତଥା ଧରଣୀଧର ମିଶ୍ର ଓ ସ୍ୱଭାବ କବି ଗଙ୍ଗାଧର ମେହେର ଏବଂ ଦକ୍ଷିଣରେ ତେଲୁଗୁ ବିରୋଧୀ ଓଡ଼ିଆ ସୁରକ୍ଷା ଆନ୍ଦୋଳନର ନେତା ଖଲ୍ଲିକୋଟର ରାଜା ହରିହର ମର୍ଦ୍ଦରାଜ ଦେଓ ଓ ପଣ୍ଡିତ ନୀଳମଣି ବିଦ୍ୟାରତ୍ନ ତଥା ଶଶୀଭୂଷଣ ରଥ ପ୍ରମୁଖ ସ୍ୱତନ୍ତ୍ର ଓଡ଼ିଶା ଗଠନ, ଓଡ଼ିଆ ଭାଷୀ ଅଞ୍ଚଳର ଏକୀକରଣ ଓ ଓଡ଼ିଆ ଅସ୍ମିତାର ପୁନର୍ଜାଗରଣ ପାଇଁ ତୃଣମୂଳ ସ୍ତରରେ ଅଦମ୍ୟ ସଂଗ୍ରାମ ଜାରି ରଖିଥିବା ବେଳେ ଏହି ସଂଗ୍ରାମକୁ ଆଗେଇ ନେଇଥିବା ଅନ୍ୟ ବୀର ପୁରୁଷମାନେ ଥିଲେ ପଣ୍ଡିତ ଗୋପବନ୍ଧୁ, ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି, ମୟୂରଭଞ୍ଜର ମହାରାଜା ଶ୍ରୀରାମ ଚନ୍ଦ୍ର ଭଞ୍ଜଦେଓ, କବିବର ରାଧାନାଥ, ପଣ୍ଡିତ ନୀଳକଣ୍ଠ, ଡକ୍ଟର ହରେକୃଷ୍ଣ

ମହତାବ ପ୍ରମୁଖ । ତତ୍‌ସହିତ ଅନେକ ମହାନ ବ୍ୟକ୍ତି, କବି, ଲେଖକ, ଓକିଲ ଓ ବୁଦ୍ଧିଜୀବୀଙ୍କ ନିରବଚ୍ଛିନ୍ନ ସଂଗ୍ରାମର ଫଳସ୍ୱରୂପ ଆଜି ଆମ ଭାଷା ସୁରକ୍ଷିତ ରହି ପାରିଥିବାରୁ ଆଜି ପ୍ରତିଷ୍ଠା ପାଇପାରିଛି । ଆଜିର ଶୁଭ ମୁହୂର୍ତ୍ତରେ ସର୍ବପ୍ରଥମେ ସେହି ଜାତିସ୍ମରମାନଙ୍କୁ ପ୍ରଣିପାତ ଜଣାଇବା ।

ପ୍ରଣିପାତ ଜଣାଇବା, ଓଡ଼ିଆ ସାହିତ୍ୟର ଆଦ୍ୟ ରୂପକାର, ମାଟିର ମହାକବି ସାରଳାଦାସଙ୍କୁ । ଯିଏ ଓଡ଼ିଆଭାଷାରେ ପୂର୍ଣ୍ଣାଙ୍ଗ ମହାଭାରତ ରଚନା କରି ଭାରତବର୍ଷରେ ଏହି ଜାତିର ପ୍ରଥମ ସାରସ୍ୱତ ପରିଚୟ ସୃଷ୍ଟି କଲେ । ସାରଳା ଯୁଗରୁ ଆରମ୍ଭ କରି ଏଯାବତ୍ ଲେଖନୀ ଚାଳନା କରି ଆସିଥିବା ଅଗଣିତ ପ୍ରାଚୀନ ଏବଂ ନବୀନ ଲେଖକ, କବି, ସାହିତ୍ୟିକ, ଅନୁବାଦକ, ଗବେଷକମାନଙ୍କ ଯୋଗୁଁ ଏ ଜାତିର ସାରସ୍ୱତ ଜୟଯାତ୍ରା ଅବ୍ୟାହତ ରହିପାରିଛି, ଏହି ଶାସ୍ତ୍ରୀୟ ମାନ୍ୟତାର ଶ୍ରେୟ ପାଇଁ ସମସ୍ତେ ହକ୍‌ଦାର ଅଟନ୍ତି ।

ଏହି ଜୟଯାତ୍ରାର ଧାରାକୁ ଆହୁରି ଆଗକୁ ନେବାକୁ ହେଲେ ଆମକୁ ଅନେକ କିଛି କରିବାକୁ ପଡିବ । ମାନ୍ୟତା ପାଇବା ପରେ ଆମେ ଖୁସି ହୋଇ ବସିଗଲେ ଭାଷାର ମୌଳିକ ସଂକଟ କେବେ ବି ଦୂର ହୋଇଯିବ ନାହିଁ । ଭାଷା ଭିତ୍ତିକ ଓଡ଼ିଶା ରାଜ୍ୟ ଗଠନ ହେଲା ସତ ଅଥଚ ଓଡ଼ିଆ ଭାଷା ସରକାରୀ ଭାଷା ହୋଇପାରିଲା ନାହିଁ। ୧୯୩୭ ମସିହାରେ କୃଷ୍ଣଚନ୍ଦ୍ର ଗଜପତିଙ୍କ ନେତୃତ୍ୱରେ ଗଠିତ ସରକାର ବେଳେ ବିଧାୟକ ବ୍ରଜ ସୁନ୍ଦର ଦାସ ଓଡ଼ିଆକୁ ସରକାରୀ ଭାଷା କରିବା ପାଇଁ ଦେଇଥିବା ପ୍ରସ୍ତାବ ଆଗକୁ ବଢିପାରି ନଥିଲା । ୧୯୫୪ ମସିହା ଅକ୍ଟୋବର ୧୫ ତାରିଖରେ ତତ୍କାଳୀନ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ 'ସରକାରୀ ଭାଷା ଆଇନ' ପ୍ରଣୟନ କରିଥିଲେ । ସରକାରୀ ଅଫିସରମାନଙ୍କ ବିରୋଧ ସତ୍ତ୍ୱେ ଓଡ଼ିଆକୁ ସରକାରୀ ଭାଷା କରାଇଥିଲେ । ସେ କ୍ଷମତାରୁ ଯିବାପରେ ତାଙ୍କ ନିର୍ଦ୍ଦେଶ ଆଉ କାର୍ଯ୍ୟକାରୀ ହୋଇପାରି ନଥିଲା । ଏହାପରେ ୧୯୮୫ ଅପ୍ରେଲ ପହିଲାରେ ତତ୍କାଳୀନ ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ନିର୍ଦ୍ଦେଶରେ ସରକାରଙ୍କ ସମସ୍ତ ବିଭାଗରେ ଓଡ଼ିଆ ଭାଷାର ପ୍ରଚଳନ ପାଇଁ ଆଦେଶ ନାମା ଜାରି ହୋଇଥିଲା ଏବଂ ଏହାକୁ କଡାକଡି ଭାବେ ପାଳନ କରିବା ପାଇଁ ପଦକ୍ଷେପ ନିଆଯାଇଥିଲା । ସେତେବେଳେ ଅନେକ କର୍ମଚାରୀ ଓ ଅଫିସରମାନେ ଆଗ୍ରହ ସହକାରେ ଏହାକୁ ପାଳନ କରିବାର ଦେଖାଯାଇଥିଲା । ବିଭିନ୍ନ ସମୟରେ ଜାନକୀବାବୁ କ୍ଷମତାରୁ ଅପସରି ଯିବା ପରେ ଏହି ଆଦେଶ ଆଉ କାର୍ଯ୍ୟକାରୀ ହୋଇପାରି ନଥିଲା । ପରବର୍ତ୍ତୀ ସମୟରେ ପୁନରାୟ ଇଂରାଜୀ ଭାଷା ପ୍ରାଧାନ୍ୟ ଲାଭ କରୁଥିଲା । ସେ ଯାହାହେଉ ବର୍ତ୍ତମାନର ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କ ଉଦ୍ୟମକ୍ରମେ ଓଡ଼ିଆ ଭାଷା ପ୍ରତିଷ୍ଠାନ ପ୍ରତିଷ୍ଠିତ ହୋଇ ଓଡ଼ିଆ ଭାଷାର ପୂର୍ଣ୍ଣାଙ୍ଗ ଇତିହାସ ରଚନା ତଥା ଶାସ୍ତ୍ରୀୟ ଭାଷା ରୂପେ ପ୍ରମାଣିତ କରିବା ପାଇଁ ବିଧିବଦ୍ଧ ଉଦ୍ୟମ ଆରମ୍ଭ ହେଲା । ଯାହାର ଫଳ ଆଜି ଓଡ଼ିଆ ଭାଷାକୁ ଉପଲବ୍ଧ ହୋଇଛି ।

ଭାଷା, ସାହିତ୍ୟ ଓ ସଂସ୍କୃତିର ବିକାଶ ପାଇଁ ପ୍ରଥମ ପଦକ୍ଷେପ ସ୍ୱରୂପ ସରକାରୀ ସ୍ତରରେ ଓଡ଼ିଆଭାଷା ବ୍ୟବହାରକୁ ସୁନିଶ୍ଚିତ କରାଇବାକୁ ପଡିବ । ସମସ୍ତ ସର୍କୁଲାର, ନୋଟିସ୍, କୋର୍ଟ କଚେରୀର ଆଇନର ଭାଷା ଓ ଆଦେଶ ଓଡ଼ିଆରେ ହେବା ଆବଶ୍ୟକ । ସେଥିପାଇଁ ଥିବା ସମସ୍ତ ପ୍ରତିବନ୍ଧକକୁ ଦୂର କରିବାକୁ ପଡିବ । ସେଥିପାଇଁ ରାଜସ୍ୱ ବୋର୍ଡ ଦ୍ୱାରା ପରିଚାଳିତ ପ୍ରଶାସକମାନଙ୍କ ପାଇଁ ସପ୍ତମ ଶ୍ରେଣୀ ପର୍ଯ୍ୟନ୍ତ ଓଡ଼ିଆ ପରୀକ୍ଷା ନହୋଇ ମାଟ୍ରିକ ସ୍ତର ପର୍ଯ୍ୟନ୍ତ ଉନ୍ନୀତ କରାଯିବା ଦରକାର । ଏହିସବୁ କାର୍ଯ୍ୟ ଆରମ୍ଭ କରିବା ପାଇଁ ଦୃଢ ରାଜନୈତିକ ଇଚ୍ଛାଶକ୍ତି, ପ୍ରଚଣ୍ଡ ଆତ୍ମବିଶ୍ୱାସ ଏବଂ ଗଭୀର ଜାତିପ୍ରୀତିର ଆବଶ୍ୟକତା ରହିଛି ।

ସବୁଠାରୁ ବିଡମ୍ବନାର ବିଷୟ ହେଉଛି ଆମ ଦେଶରେ ଅନ୍ୟ ରାଜ୍ୟର ନାଗରିକମାନଙ୍କର ଯେପରି ଭାଷାପ୍ରୀତି ରହିଛି ଓଡ଼ିଶାରେ ତାହା ଦେଖାଯାଏ ନାହିଁ । ଶିକ୍ଷିତ ଓ ସ୍ୱଚ୍ଛଳ ବର୍ଗ ଇଂରାଜୀ ମାଧ୍ୟମ ବିଦ୍ୟାଳୟରେ ସେମାନଙ୍କ ପିଲାଙ୍କୁ ପଢାଇବାରେ ଆପତ୍ତି ନାହିଁ, କିନ୍ତୁ ସେଠାରେ କେବଳ ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ଓଡ଼ିଆ ବାଧ୍ୟତାମୂଳକ ଅଟେ । ଏହାକୁ ଦଶମ ଶ୍ରେଣୀ ପର୍ଯ୍ୟନ୍ତ ବାଧ୍ୟତାମୂଳକ କରାଯିବା ଆବଶ୍ୟକ । ବାହାଘର ଓ ଅନ୍ୟ ନିମନ୍ତ୍ରଣ ପତ୍ର ଇଂରାଜୀରେ ଛପାଯିବା ଏକ ସାଧାରଣ କଥା ହୋଇଗଲାଣି । ନିପଟ ଗ୍ରାମାଞ୍ଚଳରେ ମଧ୍ୟ ଲୋକେ ଇଂରାଜୀରେ ଛାପିବାକୁ ବେଶୀ ପସନ୍ଦ କଲେଣି । ଘର ଦୁଆରେ ନାମ ଫଳକ, ବ୍ୟବସାୟ ପ୍ରତିଷ୍ଠାନର ଫଳକ ଇଂରାଜୀରେ ଲେଖାଯାଉଛି । ବିଭିନ୍ନ ସଭାସମିତି ଏବଂ ବିଧାନସଭାରେ ଇଂରାଜୀରେ କହିବା ଗୌରବରେ ପରିଣତ ହୋଇଛି । ସତେ ଯେମିତି ସମସ୍ତେ ଓଡ଼ିଶାର ନୁହନ୍ତି, ଇଉରୋପ କିମ୍ବା ଆମେରିକାରୁ ଆସି ଏଠାରେ ରହିଛନ୍ତି । ଯଦି ଯୁବପିଢିଙ୍କ ମନରେ ଓଡ଼ିଆ ପାଇଁ ଆଦର ସୃଷ୍ଟି ନହେଉଛି,

ତା' ହେଲେ ଏହି ଭାଷାର ଭବିଷ୍ୟତ କିପରି ସୁଦୃଢ ହେବ ? ସ୍କୁଲ କଲେଜରେ ଓଡ଼ିଆରେ ନପଢ଼ିଲେ ସେମାନେ ସରକାରୀ କଳରେ ଓଡ଼ିଆ ଭାଷାର ବ୍ୟବହାରକୁ ବିରୋଧ କରିବେ । ଶିକ୍ଷାନୁଷ୍ଠାନମାନେ ଯାନ୍ତ୍ରିକ ମନୁଷ୍ୟ ତିଆରି କାରଖାନାରେ ପରିଣତ ହୋଇଛନ୍ତି । ସେଠାରୁ ସୃଷ୍ଟ ଯୁବକ ମନରେ ଭାଷା, ସାହିତ୍ୟ, ସଂସ୍କୃତି ଓ ଆମ ଓଡ଼ିଶୀ ସଂଗୀତର ସୁମଧୁର ମୂର୍ଚ୍ଛନା କୌଣସି ଆଗ୍ରହ ଆଣୁନାହିଁ । ଓଡ଼ିଆ ଯୁବକ ମନରେ ଓଡ଼ିଆତ୍ୱ ପାଇଁ ଉଦ୍ଦୀପନା ସୃଷ୍ଟି କରିବାର କୌଶଳ ଆପଣାଇବାକୁ ହେବ । ଏଥିପାଇଁ ଗଭୀର ଚିନ୍ତନ ଏବଂ କାର୍ଯ୍ୟକ୍ରମ ନେବାକୁ ପଡିବ । ଏଥିପାଇଁ ସୂଚନା ଓ ପ୍ରଯୁକ୍ତି କ୍ଷେତ୍ରରେ ଓଡ଼ିଆର ପ୍ରୟୋଗକୁ ଆନନ୍ଦଦାୟୀ କରିବାକୁ ପଡିବ । ସରକାରୀ ୱେବସାଇଟ୍‌ମାନଙ୍କରେ ଓଡ଼ିଆଭାଷାର ବହୁଳ ବ୍ୟବହାର ଯୁବ ସମାଜ ଆକୃଷ୍ଟ ହେବାର ପରିବେଶ ସୃଷ୍ଟି ହୋଇପାରିବ । ଅନ୍ୟ ପକ୍ଷରେ କେତେକ ଶିକ୍ଷିତ ବୟସ୍କ, ବୁଦ୍ଧିଜୀବୀମାନେ ଓଡ଼ିଆ ଭାଷାକୁ ରୋଜଗାର ବିରୋଧୀ ବୋଲି ଅପପ୍ରଚାର କରି ଯୁବପିଢ଼ିଙ୍କୁ ଯେପରି ନିରୁତ୍ସାହିତ କରୁଛନ୍ତି, ସେମାନେ ସେଥିରୁ ନିବୃତ ହେବା ଆବଶ୍ୟକ । ଶାସ୍ତ୍ରୀୟ ମାନ୍ୟତା ତ ମିଳିଗଲା ତେବେ ପରବର୍ତ୍ତୀ କାର୍ଯ୍ୟଧାରା ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ଅତିଶୀଘ୍ର ପୁରାତନ ପୋଥି ଯେଉଁଠାରେ ରହିଛି ତା'କୁ ଉଦ୍ଧାର କରି ସଂରକ୍ଷଣ କରାଯିବା ଆବଶ୍ୟକ । ରାଜ୍ୟ ସରକାର ଯୋଗ୍ୟ ବ୍ୟକ୍ତିମାନଙ୍କୁ ଡାକି ପରାମର୍ଶ ନେବା ଉଚିତ ଓ ଏକ ଭିତ୍ତି ସମ୍ମେଳନ ଜରିଆରେ ସମସ୍ତଙ୍କଠାରୁ ମତାମତ ସଂଗ୍ରହ କରିବା ମଧ୍ୟ ଦରକାର । ଏହି ମାନ୍ୟତା ପାଇଥିବା ଅନ୍ୟ ରାଜ୍ୟମାନେ କ'ଣ ସବୁ କରିଛନ୍ତି ତାକୁ ଅନୁଶୀଳନ କରିବା ସହ ଆମ ଭାଷାର ସମସ୍ୟା ଓ ଆବଶ୍ୟକତାକୁ ଆଖିରେ ରଖି ଯୋଜନା ପ୍ରସ୍ତୁତ କରିବାକୁ ପଡିବ । କେନ୍ଦ୍ର ଯେଉଁ ଅର୍ଥରାଶି ଦେବେ ରାଜ୍ୟ ସରକାର ଏହାର ସୁବିନିଯୋଗ କରି ଯୁଗାନ୍ତକାରୀ ପଦକ୍ଷେପ ନେଇପାରିବେ । ଓଡ଼ିଆ ଭାଷାରେ ଅଧିକରୁ ଅଧିକ ଗବେଷକଙ୍କୁ ସୃଷ୍ଟି କରିବାକୁ ପଡିବ ।

ଆବାହକ, ଶିକ୍ଷା ଅଧିକାର
ସୁରକ୍ଷା ଅଭିଯାନ (ଶାସା)

# ଉତ୍କଳ ପ୍ରସଙ୍ଗ

**The Utkal Prasanga**
**March- 2014**

୭୦ ଭାଗ    ୮ମ ସଂଖ୍ୟା    ଫାଲ୍‌ଗୁନ୍–ଚୈତ୍ର    ମାର୍ଚ୍ଚ –୨୦୧୪



**ପ୍ରତିଖଣ୍ଡ : ଟ. ୫.୦୦**

---



ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ–୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଲୋକ ସମ୍ପର୍କ ଭବନ, ଭୁବନେଶ୍ୱର–୭୫୧୦୦୧
ଇ–ମେଲ୍ : iprsec@rediffmail.com, iprsec.or@nic.in, ୱେବ୍‌ସାଇଟ୍ : www.orissagov.nic.in
ଫୋନ୍ : ୦୬୭୪–୨୫୩୦୨୧୧

# ସୂଚୀ





## ସମ୍ପାଦକୀୟ

# ଓଡ଼ିଆ ଭାଷାର ଶାସ୍ତ୍ରୀୟ ମାନ୍ୟତା ଲାଭ: ଏକ ଐତିହାସିକ ଉପଲବ୍ଧି

ଓଡ଼ିଆ ଜାତି ତାର ଜୀବନ କାଳ ମଧ୍ୟରେ ବେଶ୍ କେତୋଟି ଐତିହାସିକ ସଂଗ୍ରାମରେ ବିଜୟୀ ହୋଇ ନିଜର ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିବା ସହିତ ନିଜର ସ୍ୱାଭିମାନର ବିଜୟ ବୈଜୟନ୍ତୀଙ୍କୁ ବିଶ୍ୱ ଦରବାରରେ ସଗୌରବେ ଉଡାଇ ଅଗ୍ରଗତିର ରାଜପଥରେ ବେଶ୍ ଦୃଢତାର ସହ ଆଗେଇ ଚାଲିଛି, ପଛକୁ ନଚାହିଁ ।

ଏକଦା ସମ୍ରାଟ୍ ଖାରବେଳଙ୍କ ନେତୃତ୍ୱରେ ଏ ଦେଶର ପ୍ରବଳ ପରାକ୍ରମୀ ସେନାନୀ ସମଗ୍ର ଜମ୍ବୁଦ୍ୱୀପ ଜୟ କରି ପ୍ରାଚୀନ ଭାରତରେ କଳିଙ୍ଗର ଗୌରବମୟ ଇତିହାସ ରଚନା କରିଥିଲେ, ଯାହାର ମୂକସାକ୍ଷୀ ଖଣ୍ଡଗିରିର ହାତୀଗୁମ୍ଫାରେ ଖୋଦିତ ଶିଳାଲିପି ଏବଂ ସଗୌରବେ ସେହି ଶିଳାଲିପି ଓଡ଼ିଆଙ୍କ ବୀରତ୍ୱର ଗାଥା ଆଜି ବି ବିଶ୍ୱରେ ଘୋଷଣା କରୁଛି ।

ତାହାର ପ୍ରାୟ ଏକ ସହସ୍ରାବ୍ଦ ପରେ ଗଙ୍ଗନରପତିମାନଙ୍କ ନେତୃତ୍ୱରେ ଏଜାତି ପୁନରାୟ କେବଳ ଆଗଙ୍ଗା-ଗୋଦାବରୀ ବିସ୍ତୃତ ଏକ ଓଡ଼ିଆ ସାମ୍ରାଜ୍ୟ ଗଠନ କରି ନଥିଲେ, ତା' ସହିତ ଶିଳ୍ପ, ବାଣିଜ୍ୟ, ସ୍ଥାପତ୍ୟ ଏବଂ ଏକ ବିଶ୍ୱ ଭ୍ରାତୃତ୍ୱର ମୂଳଦୁଆ ପକାଇ ଶ୍ରୀଶ୍ରୀ ଜଗନ୍ନାଥଙ୍କୁ ପ୍ରତୀକ କରି ଓଡ଼ିଆ ଜାତି ଓ ଭାଷାର ସମୃଦ୍ଧି ସାଧନ କରିଥିଲେ । ତା ପୂର୍ବରୁ ଭୌମକର ନରପତିମାନଙ୍କ ଶାସନ ଅଧୀନରେ ବିଶାଳ ଓଡ଼ିଆ ସାମ୍ରାଜ୍ୟର ଭିତ୍ତି ପକାଯାଇଥିଲା । ଭୌମକରମାନଙ୍କ ପରେ ସୋମବଂଶୀ (କେଶରୀ) ନରପତିମାନେ ଖଣ୍ଡବିଖଣ୍ଡିତ ସାଂସ୍କୃତିକ ଓଡ଼ିଶାକୁ ଏକତ୍ରିତ କରି ବିଶାଳ ତ୍ରିକଳିଙ୍ଗ (ଉତ୍କଳ-କଳିଙ୍ଗ-କୋଶଳ) ସାମ୍ରାଜ୍ୟ ଗଠନ କରିଥିଲେ । ସତ କହିବାକୁ ଗଲେ, କେଶରୀ (ସୋମବଂଶୀ) ନରପତି ମହାଶିବଗୁପ୍ତ ଚଣ୍ଡୀହର ଯଯାତି ୨ୟ ହିଁ ଆଧୁନିକ ଓଡ଼ିଶା (ଓଡ଼ିଆ ଭାଷାଭାଷୀ ଅଞ୍ଚଳ)ର ପ୍ରାଣ ପ୍ରତିଷ୍ଠାତା, ଯାହା ପୁଣି ଇତିହାସର କ୍ରୁର ଘଟଣାଚକ୍ରରେ ଖଣ୍ଡଖଣ୍ଡ ହୋଇ ବିଭିନ୍ନ ପଡୋଶୀ ପ୍ରଦେଶମାନଙ୍କର ଅଙ୍ଗ ହୋଇଯାଇଥିଲା ଏବଂ ଯାହାକୁ ବିଂଶ ଶତାବ୍ଦୀର ତୃତୀୟ ଦଶକ (୧୯୩୬)ରେ ଦେଶ ଗୌରବ ମଧୁବାବୁ ଓ ବହୁ ମନିଷୀଙ୍କ ନିଷ୍ଠାପର ତ୍ୟାଗ ତପସ୍ୟା ବଳରେ ପୁଣି ଏକତ୍ରିତ କରାଯାଇଥିଲା । ଅବଶ୍ୟ ଯେଉଁ ଆଧୁନିକ ଓଡ଼ିଶାକୁ ଆମେ ପାଇଅଛୁଁ, ତାହା ଗଙ୍ଗ ଓ ସୂର୍ଯ୍ୟବଂଶୀ ଗଜପତିମାନଙ୍କ ସମୟର ଓଡ଼ିଶାର ଏକ ତୃତୀୟାଂଶ ଅଞ୍ଚଳ ମାତ୍ର ।

ଓଡ଼ିଶାର ଗୌରବମୟ ଇତିହାସର ଗାରିମାମୟ ଅଧ୍ୟାୟର ନାୟକ ସମ୍ରାଟ ଖାରବେଳଙ୍କ ପରେ ସମ୍ରାଟ କପିଳେନ୍ଦ୍ର ଦେବ, ଓଡ଼ିଶାର ଦ୍ୱିତୀୟ ସର୍ବଶ୍ରେଷ୍ଠ ସଫଳ ଦିଗ୍‌ବିଜୟୀ ସମ୍ରାଟ୍ । ସୂର୍ଯ୍ୟ ବଂଶର ଏହି ମହାନ୍ ପରାକ୍ରମୀ ସମ୍ରାଟ୍ ଗୋଦାବରୀର ଆହୁରି ଦକ୍ଷିଣକୁ ଦ୍ରାବିଡ ସଂସ୍କୃତିର କେନ୍ଦ୍ରାଞ୍ଚଳ ଅର୍ଥାତ୍ ତାମିଲ ଅଞ୍ଚଳ ଓ କନ୍ନଡ ଅଞ୍ଚଳ (ଯଥା: କୁଳବର୍ଗ ବା ଗୁଲବର୍ଗା) ଯାଏଁ ନିଜ ସାମ୍ରାଜ୍ୟକୁ ସଂପ୍ରସାରିତ କରିଥିଲେ ।

ହେଲେ ଏହାସବୁ ଅତୀତର ଇତିହାସ । ୧୮୦୩ରେ ଇଂରେଜମାନେ ଓଡ଼ିଶାକୁ ବିଭିନ୍ନ ସମୟରେ ଖଣ୍ଡିଏ ଖଣ୍ଡିଏ କରି ଅଧିକାର କରିଥିଲେ । ଫଳରେ ଓଡ଼ିଶାକୁ ସେମାନେ ବିଭିନ୍ନ ପଡୋଶୀ ପ୍ରଦେଶମାନଙ୍କର ଅଙ୍ଗ କରି ଓଡ଼ିଆ ଜାତି, ଭାଷା ଓ ସଂସ୍କୃତିକୁ ଚରମ ଦୁର୍ଗତି ଭିତରକୁ ନେଇ ଯାଇଥିଲେ । ତେଣୁ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ତୀବ୍ରତର ଦାବି ଓ ସଂଗ୍ରାମ ହୋଇଥିଲା, ଯାହାକି ୧୯୩୬ ଏପ୍ରିଲ୍‌ରେ ସାକାର ହୋଇଥିଲା ।

ରାଜନୈତିକ ଓଡ଼ିଶାର ଗଠନ ହୋଇଥିଲେ ସୁଦ୍ଧା ଏହାର ଭାଷା ଅର୍ଥାତ୍ ଓଡ଼ିଆ ଭାଷା ସର୍ବଭାରତୀୟ ସ୍ତରରେ ନିଜର ଯଥାଯଥ ସ୍ଥାନ ପାଇବାରୁ ବଞ୍ଚିତ ଥିଲା । ଭାରତର ସମ୍ବିଧାନ ଅବଶ୍ୟ ଓଡ଼ିଆ ଭାଷାକୁ ସ୍ୱୀକୃତି ଦେଇଥିଲା, ମାତ୍ର ହିନ୍ଦୀ, ତାମିଲ,

ବଙ୍ଗଳା ବା ମରାଠି ଇତ୍ୟାଦି ଭାଷାର ସମତୁଲ୍ୟ ହେବାକୁ ଏହି ଭାଷା ପାଇଁ କଷ୍ଟକର ବ୍ୟାପାର ହୋଇପଡିଲା । ତେଣୁ ଓଡ଼ିଆ ଭାଷାଭାଷୀମାନେ ଅନେକ ସମୟରେ ଅନ୍ୟାନ୍ୟ ଭାଷାଭାଷୀମାନଙ୍କ ତୁଳନାରେ ନିଜକୁ ନ୍ୟୁନ ବିଚାର କରୁଥିଲେ । ଏହି ହୀନମନ୍ୟତା ବିରୁଦ୍ଧରେ ପ୍ରଥମେ ନୃତ୍ୟ ଓ ସଂଗୀତ କ୍ଷେତ୍ରରେ କାର୍ଯ୍ୟ ଆରମ୍ଭ ହୋଇଥିଲା ଏବଂ ଓଡ଼ିଶୀ ନୃତ୍ୟକୁ ସର୍ବଭାରତୀୟ ସ୍ତରରେ ଏକ ଶାସ୍ତ୍ରୀୟ ନୃତ୍ୟର ମର୍ଯ୍ୟାଦା ପ୍ରାପ୍ତ ହୋଇଥିଲା । ଏଥିପାଇଁ ଅନେକ ନୃତ୍ୟ-ସଂଗୀତ ବିଶାରଦ ପଣ୍ଡିତମାନଙ୍କର ବହୁ ଅବଦାନ ରହିଛି । ଓଡ଼ିଶୀ ନୃତ୍ୟକୁ ଶାସ୍ତ୍ରୀୟ ନୃତ୍ୟର ମାନ୍ୟତା ଦେବା ପାଇଁ ସବୁଠାରୁ ଅଧିକ ଅବଦାନ ରହିଛି ପ୍ରାତଃ ସ୍ମରଣୀୟ ନାଟ୍ୟକାର ତଥା ନୃତ୍ୟ-ସଂଗୀତ ବିଶାରଦ ସ୍ୱର୍ଗତ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକଙ୍କର । ଦୁଃଖର କଥା ଓଡ଼ିଶୀ ସଂଗୀତ ଅଦ୍ୟାବଧି ଶାସ୍ତ୍ରୀୟ ସଂଗୀତର ମର୍ଯ୍ୟାଦା ପ୍ରାପ୍ତ ହୋଇପାରିନାହିଁ । ତେବେ ଆଶ୍ୱାସନାର କଥା ଏହିକି ଯେ, ଏଥିପାଇଁ ସଙ୍ଗୀତ-ଶାସ୍ତ୍ରୀମାନେ ନିଜର ଉଦ୍ୟମ ଅବ୍ୟାହତ ରଖିଛନ୍ତି । ଆଶା କରାଯାଏ, ଓଡ଼ିଶୀ ସଂଗୀତ ମଧ୍ୟ ଅତିଶୀଘ୍ର ଶାସ୍ତ୍ରୀୟ ସଂଗୀତର ମର୍ଯ୍ୟାଦା ଲାଭ କରିପାରିବ । ସେଥିପାଇଁ ଆହୁରି ତୀବ୍ର ଓ ଶାଣିତ ସଂଗ୍ରାମର ଆବଶ୍ୟକତା ରହିଅଛି ।

ଏହାପରେ ଓଡ଼ିଆ ଭାଷାର ଶାସ୍ତ୍ରୀୟ ମର୍ଯ୍ୟାଦା ପ୍ରାପ୍ତି ପାଇଁ ପ୍ରୟାସ ଆରମ୍ଭ ହୋଇଥିଲା । କିନ୍ତୁ ଏହି ପ୍ରୟାସ ସୁସଂଗଠିତ ଓ ଶାଣିତ ନଥିଲା । ହେଲେ ନିକଟରେ ତାମିଲ ଭାଷା, ତା'ପରେ ପରେ ତେଲୁଗୁ ଭାଷା ଏବଂ କନ୍ନଡ ଭାଷା କେନ୍ଦ୍ର ସରକାରଙ୍କ ଦ୍ୱାରା ଶାସ୍ତ୍ରୀୟ ମର୍ଯ୍ୟାଦା ଲାଭ କରିବା ପାଇଁ ଉଦ୍ୟମ କରି ସଫଳ ହେଲେ । ତତ୍‌ପରେ ମାଲାୟଲମ୍ ଭାଷା ଶାସ୍ତ୍ରୀୟ ଭାଷାର ମାନ୍ୟତା ଲାଭ ପାଇଁ କେରଳର ସରକାରୀ ଓ ବେସରକାରୀ ସ୍ତରରେ ସଂଗ୍ରାମ ଆରମ୍ଭ ହୋଇଗଲା । କେନ୍ଦ୍ର ସରକାରଙ୍କ ନିକଟରେ ନିଜର ପ୍ରାଚୀନତା ପ୍ରମାଣିତ କରି ମାଲାୟଲମ୍ ଭାଷା ମଧ୍ୟ ଶାସ୍ତ୍ରୀୟ ଭାଷାର ମାନ୍ୟତା ଲାଭ କରିବାରେ ସଫଳ ହୋଇପାରିଲା ।

ଓଡ଼ିଆ ଭାଷାର ପ୍ରାଚୀନତା ଉପରେ ପ୍ରଥମେ ବେସରକାରୀ ଭାବେ ଉଦ୍ୟମ କିଛି ବର୍ଷ ତଳୁ ଆରମ୍ଭ ହୋଇଥିଲା ଏବଂ କିଛି ଭାଷାତତ୍ତ୍ୱବିଦ୍ ଏଥିପାଇଁ ଗବେଷଣାରତ ଥିଲେ । ମାତ୍ର ଓଡ଼ିଶା ସରକାର 'ଓଡ଼ିଆ ଭାଷା ପ୍ରତିଷ୍ଠାନ' ଗଠନ କରି ଏ କାର୍ଯ୍ୟପ୍ରତି ସରକାରୀ ପ୍ରୋତ୍ସାହନ ଯୋଗାଇ ଦେଲେ । 'ଓଡ଼ିଆ ଭାଷା ପ୍ରତିଷ୍ଠାନ'ର କାର୍ଯ୍ୟକୁ ଅଧିକ ସୁଗମ ଓ ସରଳ କରିବା ପାଇଁ ରାଜ୍ୟ ସଂସ୍କୃତି ବିଭାଗ ତରଫରୁ ଏକ ବିଶେଷଜ୍ଞ ମଣ୍ଡଳୀ ଗଠନ କରିବା ପାଇଁ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଓ ମାନ୍ୟବର ସଂସ୍କୃତିମନ୍ତ୍ରୀ ଶ୍ରୀ ମହେଶ୍ୱର ମହାନ୍ତି ଯେଉଁ ୧୬ ଜଣିଆ ଭାଷା ବିଶେଷଜ୍ଞ କମିଟି ଗଠନ କରି ଓଡ଼ିଆ ଭାଷାର ପ୍ରାଚୀନତାକୁ ପ୍ରମାଣିତ କରିବାକୁ ପଦକ୍ଷେପ ନେଲେ, ତାର ଫଳଶ୍ରୁତି ସ୍ୱରୂପ ଏବେଏବେ ଓଡ଼ିଆ ଭାଷାର ଶାସ୍ତ୍ରୀୟ ମାନ୍ୟତା ପ୍ରଦାନ ପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀ କେନ୍ଦ୍ର ସରକାରଙ୍କୁ ୨୩ ଜୁଲାଇ ୨୦୧୩ ତାରିଖରେ ସୁପାରିଶ କରିଛନ୍ତି ।

ରାଜ୍ୟ ସଂସ୍କୃତି ବିଭାଗ ଦ୍ୱାରା ଗଠିତ ୧୬ ଜଣିଆ କମିଟି ଓଡ଼ିଆ ଭାଷାର ପ୍ରାଚୀନତା ପ୍ରାୟ ଦୁଇହଜାର ବର୍ଷର ବୋଲି ଯୁକ୍ତି ତଥା ପ୍ରମାଣ ସହ କେନ୍ଦ୍ର ସାହିତ୍ୟ ଏକାଡେମୀ ନିକଟରେ ସମସ୍ତ ଦଲିଲ ଓ କାଗଜପତ୍ର ଉପସ୍ଥାପିତ କରିଥିଲେ । ସେହି ଦଲିଲ୍ ଓ କାଗଜପତ୍ରକୁ ଅନୁଧ୍ୟାନ, ଅନୁଶୀଳନ ଓ ପୁଙ୍ଖାନୁପୁଙ୍ଖ ଭାବେ ପରୀକ୍ଷା କରି କେନ୍ଦ୍ର ସାହିତ୍ୟ ଏକାଡେମୀ ଓଡ଼ିଆ ଭାଷା ଯେ ପ୍ରାୟ ୨ହଜାର ବର୍ଷ ପ୍ରାଚୀନ, ତାହା ସ୍ୱୀକାର କରି ଏହି ଭାଷାକୁ ଶାସ୍ତ୍ରୀୟ ଭାଷାର ମାନ୍ୟତା ପ୍ରଦାନ କରିବାକୁ କେନ୍ଦ୍ର ସରକାରଙ୍କୁ ସୁପାରିଶ କରିଛନ୍ତି, ଯେହେତୁ କେନ୍ଦ୍ର ସାହିତ୍ୟ ଏକାଡେମୀ ହିଁ ହେଉଛି ଏ କ୍ଷେତ୍ରର ବିଶେଷଜ୍ଞ କମିଟି । ତେଣୁ ଆଶା କରାଯାଏ, କେନ୍ଦ୍ରୀୟ କ୍ୟାବିନେଟ୍ ଅତିଶୀଘ୍ର ଏହି ସୁପାରିଶକୁ ଗ୍ରହଣ କରି ଓଡ଼ିଆ ଭାଷାର ଶାସ୍ତ୍ରୀୟ ମାନ୍ୟତାକୁ ମୋହର ଦେବେ ।

ଓଡ଼ିଆ ଭାଷାର ଶାସ୍ତ୍ରୀୟ ମାନ୍ୟତା ପ୍ରାପ୍ତି ପାଇଁ ଯେଉଁ ଭାଷାତତ୍ତ୍ୱବିଦ୍‌ମାନେ ଓଡ଼ିଶା ସରକାରଙ୍କୁ ନିଜର ଅକ୍ଳାନ୍ତ ପରିଶ୍ରମ ଦ୍ୱାରା ଗବେଷଣା କରି ସେଥିରୁ ଲାଭ କରିଥିବା ଜ୍ଞାନ ଦ୍ୱାରା ସହାୟତା କରିଛନ୍ତି, ସେମାନେ ଧନ୍ୟବାଦାର୍ହ । ଏଥିପାଇଁ ଆନ୍ତର୍ଜାତିକ ସ୍ତରରେ ସୁଖ୍ୟାତି ଅର୍ଜନ କରିଥିବା ବିଶିଷ୍ଟ ଭାଷାତତ୍ତ୍ୱବିଦ୍ ପଦ୍ମଶ୍ରୀ ଡକ୍ଟର ଦେବୀ ପ୍ରସନ୍ନ ପଟ୍ଟନାୟକ ସର୍ବାଗ୍ରେ ସ୍ମରଣୀୟ ଓ ବଧେଇର ପାତ୍ର । ପ୍ରଫେସର ନଟବର ଶତପଥୀ, ପ୍ରଫେସର ରାଜକିଶୋର ମିଶ୍ର ଓ ପ୍ରଫେସର ଯତୀନ ନାୟକ ତଥା ତରୁଣ ଗବେଷକ ବସନ୍ତ ପଣ୍ଡା ଏବଂ ସୁବ୍ରତ ପୃଷ୍ଟି ପ୍ରମୁଖଙ୍କର ଉଦ୍ୟମ ଏ କ୍ଷେତ୍ରରେ ମଧ୍ୟ ଅନବଦ୍ୟ ଓ ଓଡ଼ିଆ ଭାଷାର ଶାସ୍ତ୍ରୀୟ ମାନ୍ୟତା ଲାଭ ପାଇଁ ଏହା ପଥ ସୁଗମ କରିପାରିଛି ।

ଉନବିଂଶ ଶତାବ୍ଦୀର ମଧ୍ୟଭାଗରେ ଏ ଭାଷାକୁ ଲୋପ କରିବା ପାଇଁ ଆମର କିଛି ପଡୋଶୀ ଯେଉଁ ହୀନ ଉଦ୍ୟମ କରିଥିଲେ, ତାକୁ ମୁକାବିଲା କରିବା ପାଇଁ ଏ ଜାତିର ଭାଷା ଆନ୍ଦୋଳନର ସର୍ବଶ୍ରେଷ୍ଠ ସେନାପତି ଫକୀରମୋହନ, କର୍ମବୀର

ଗୌରୀଶଙ୍କର, ଭକ୍ତକବି ମଧୁସୂଦନ ରାଓ, କବିବର ରାଧାନାଥ ରାୟ, ଆଚାର୍ଯ୍ୟ ପ୍ୟାରୀ ମୋହନ ଇତ୍ୟାଦି ସାରସ୍ୱତ ସ୍ରଷ୍ଟାମାନେ ଯେଉଁ ସଂଗ୍ରାମ ତତ୍କାଳୀନ ଇଂରେଜ ସରକାରଙ୍କ ସହିତ କରିଥିଲେ, ତାହା ଥିଲା ଆମ ଭାଷାର ଅସ୍ତିତ୍ୱ ରକ୍ଷା କରିବାର ପ୍ରଥମ ସଂଗ୍ରାମ । ଏବର ଶାସ୍ତ୍ରୀୟ ମର୍ଯ୍ୟାଦା ଲାଭର ସଂଗ୍ରାମ ହେଉଛି ଆମ ଅସ୍ମିତା ଓ ଆତ୍ମଗୌରବ ରକ୍ଷାର ସଂଗ୍ରାମ । ସେତେବେଳେ ଜନ୍‌ବୀମ୍ସଙ୍କ ପରି ଜଣେ ବିଦେଶୀ ଆମ ଭାଷା ପାଇଁ ନିଜ ସରକାର ସହିତ ତର୍କ କରିଥିଲେ । ଆଜି ଏ ମାଟିର ଭୂମିପୁତ୍ର ପ୍ରବାଦ ପୁରୁଷ ସ୍ୱର୍ଗତ ବିଜୁବାବୁଙ୍କ ସୁପୁତ୍ର ଶ୍ରୀ ନବୀନ ପଟ୍ଟନାୟକ ଓ ତାଙ୍କର ସଂସ୍କୃତି ମନ୍ତ୍ରୀ ଶ୍ରୀମହେଶ୍ୱର ମହାନ୍ତିଙ୍କର କେନ୍ଦ୍ର ସରକାରଙ୍କ ନିକଟରେ ସମପରିମାଣର ତର୍କ ଓ ଚାପ ସେହିପରି ଏକ ଐତିହାସିକ ଘଟଣା । ଅନେକ ରାଜନେତା ମଧ୍ୟ ଏଥିରେ ସହଯୋଗ ଦେଇଛନ୍ତି । ସଂସଦ ଭବନ ଭିତରେ ଓ ବାହାରେ ସାଂସଦ

ଶ୍ରୀ ଶଶୀଭୂଷଣ ବେହେରା ଓଡ଼ିଆ ଭାଷାର ପ୍ରାଚୀନତା ତଥା ଶାସ୍ତ୍ରୀୟତା ପାଇଁ ଯେଉଁ ଉଦ୍ୟମ କରିଛନ୍ତି, ତାହା ଖୁବ୍ ପ୍ରଶଂସନୀୟ । ସାଂସଦ ରାମଚନ୍ଦ୍ର ଖୁଣ୍ଟିଆ ଓ ଦିଲ୍ଲୀସ୍ଥିତ ପ୍ରବାସୀ ଓଡ଼ିଆ ସାମ୍ବାଦିକ ଶ୍ରୀରାମଚନ୍ଦ୍ର ନାଥଙ୍କର ଉଦ୍ୟମ ଯଥେଷ୍ଟ ପ୍ରଶଂସନୀୟ । 'ଓଡ଼ିଆ ଭାଷା ପ୍ରତିଷ୍ଠାନ'ର ନିର୍ଦ୍ଦେଶକ ଡକ୍ଟର ପ୍ରସନ୍ନ ମହାନ୍ତି ତଥା ପୂର୍ବତନ ନିର୍ଦ୍ଦେଶକ ଡକ୍ଟର କୈଳାସ ଚନ୍ଦ୍ର ଟିକାୟତ ରାୟଙ୍କ ଉଦ୍ୟମ ଓଡ଼ିଆ ଭାଷାର ଶାସ୍ତ୍ରୀୟ ମାନ୍ୟତା ଲାଭ ପାଇଁ ମଧ୍ୟ ଉଲ୍ଲେଖନୀୟ । ସବୁ ଶ୍ରେୟ ସେମାନେ ନେବା ପାଇଁ କିଛି ରାଜନୈତିକ ବ୍ୟକ୍ତି ଯେପରି ଗଳାଫଟାଇ ଚିତ୍କାର କରୁଛନ୍ତି, ତାହା ଠିକ୍ ନୁହେଁ । ଏହା ଓଡ଼ିଆଙ୍କର ଚିରାଚରିତ କଙ୍କଡା ପ୍ରକୃତିକୁ ପ୍ରମାଣିତ କରିବା ବ୍ୟତୀତ ଓଡ଼ିଆ ଜାତିର ଅନ୍ୟ କିଛି ଉପକାର କରିପାରିବ ନାହିଁ । ଓଡ଼ିଆ ଭାଷାର ଶାସ୍ତ୍ରୀୟ ମାନ୍ୟତା ଲାଭ ପାଇଁ ଉଦ୍ୟମ କରିବାକୁ ସର୍ବପ୍ରଥମେ 'ଓଡ଼ିଆ ଭାଷା ପ୍ରତିଷ୍ଠାନ'ର ଉଦ୍‌ଘାଟନ ଉତ୍ସବରେ (୧ ଏପ୍ରିଲ୍ ୨୦୦୯ରେ ଅନୁଷ୍ଠିତ) ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ମତ ପ୍ରକାଶ କରି ଏ ଦିଗରେ ତୁରନ୍ତ କାର୍ଯ୍ୟ ଆରମ୍ଭ କରିବାକୁ ଏହି ନବଜାତ ଅନୁଷ୍ଠାନଙ୍କୁ ନିର୍ଦ୍ଦେଶ ଦେଇଥିଲେ । ଏତଦ୍‌ବ୍ୟତୀତ ଓଡ଼ିଆ ଭାଷାର (ସାହିତ୍ୟ ସମେତ) ପ୍ରାମାଣିକ ଇତିହାସ ରଚନା କରିବାକୁ ମଧ୍ୟ ମୁଖ୍ୟମନ୍ତ୍ରୀ ସେହି ସଭାରେ ନିର୍ଦ୍ଦେଶ ପ୍ରଦାନ କରିଥିଲେ । ତାଙ୍କର ଏହି ନିର୍ଦ୍ଦେଶ ଆନୁଷ୍ଠାନିକଭାବେ ପ୍ରାପ୍ତ ହୋଇ ସଂସ୍କୃତି ବିଭାଗ ଓଡ଼ିଆ ଭାଷାର ଇତିହାସ ରଚନା କରିଅଛି, ଯାହାକି ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କର ଓଡ଼ିଆଭାଷା-ସାହିତ୍ୟ ପ୍ରତି ପ୍ରତିବଦ୍ଧତାକୁ ପ୍ରମାଣିତ କରୁଛି ।

ମୁଁ ସାହିତ୍ୟ ଏକାଡେମୀର ସଭାପତି ଥିବାବେଳେ ଓ ତା'ପରେ ମଧ୍ୟ ଓଡ଼ିଆ ଭାଷାର ପ୍ରାଚୀନତା ସମ୍ପର୍କରେ ବହୁ ସଭାସମିତିରେ ଯୁକ୍ତି ସହିତ ତର୍କ ଉପସ୍ଥାପିତ କରିଅଛି । ସାହିତ୍ୟ ଏକାଡେମୀର ଏକ ସମ୍ବର୍ଦ୍ଧନା ପ୍ରଦାନ ଉତ୍ସବରେ ମୋର ଏହି ବକ୍ତବ୍ୟ ଶୁଣି, ସଭାରେ ଉପସ୍ଥିତ ଥିବା ସମ୍ମାନନୀୟ କବି ପଦ୍ମଭୂଷଣ ରମାକାନ୍ତ ରଥ ମୋତେ ଫୋନ୍ କରି ସାଧୁବାଦ ଜଣାଇଥିଲେ ଓ ଏ ଦିଗରେ ସମ୍ମିଳିତ ଉଦ୍ୟମ କରିବାକୁ ମତ ଦେଇଥିଲେ ।

ସେ ଯା'ହେଉ, ଭାଷାକୁ ନେଇ ରାଜନୀତି ନକରି କେନ୍ଦ୍ର ସାହିତ୍ୟ ଏକାଡେମୀ କରିଥିବା ସୁପାରିଶକୁ କିପରି କେନ୍ଦ୍ର ସରକାର ଶ୍ରୀଘ୍ରାତିଶୀଘ୍ର ଗ୍ରହଣ କରି ବିଜ୍ଞପ୍ତି ପ୍ରକାଶ କରିବେ, ସେଥିପାଇଁ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ନେତୃତ୍ୱରେ ଦଳମତ ନିର୍ବିଶେଷରେ ସମସ୍ତେ ଏକଜୁଟ୍ ହୋଇପାରିଲେ, ପୁନରାୟ ଖାରବେଳ କପିଳେନ୍ଦ୍ରଙ୍କ ସମୟର ସାଂସ୍କୃତିକ, ଭାଷାଗତ ଓ ଅନ୍ୟାନ୍ୟ ଗୌରବମାନ ଓଡ଼ିଆଙ୍କ ପାଖକୁ ନିଶ୍ଚୟ ଫେରି ଆସିପାରିବ, ଏଥିରେ ଦ୍ୱିମତ ନାହିଁ । ଓଡ଼ିଆ ଭାଷାର ଶାସ୍ତ୍ରୀୟ ମାନ୍ୟତା ଲାଭ ସାମଗ୍ରିକ ଭାବେ ସମଗ୍ର ଓଡ଼ିଆ ଭାଷା-ଭାଷୀଙ୍କର ବିଜୟ, ଏହା ନିଃସନ୍ଦେହ । ହିନ୍ଦୀ, ବଙ୍ଗଳା, ମରାଠୀ ଇତ୍ୟାଦି ଭାଷା ପରି ଦୁର୍ଦ୍ଦଶ ପ୍ରଦେଶର ଅତି କ୍ଷମତାଶାଳୀ ବ୍ୟକ୍ତିମାନଙ୍କ ଉଦ୍ୟମ ଓଡ଼ିଆ ଭାଷାର ଦାବି ସାମ୍ନାରେ ନ୍ୟୂନ ହୋଇଯାଇଛି । ଏହାହିଁ ଓଡ଼ିଆ ଜାତିର ସଦ୍ୟତମ ଐତିହାସିକ ବିଜୟ । ସହସ୍ରାବ୍ଦର ଦୁଇଗୋଟି ଘଟଣା, ପ୍ରଥମଟି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ (୧୯୩୬) ଓ ଦ୍ୱିତୀୟଟି ଓଡ଼ିଆ ଭାଷାର ଶାସ୍ତ୍ରୀୟ ମାନ୍ୟତା ଲାଭ (୨୦୧୩) ଏହି ଗୌରବମୟ ଜାତିର ଶ୍ରେଷ୍ଠ ବିଜୟ । ଓଡ଼ିଆ ଜାତି, ଭାଷା, ସଂସ୍କୃତି ଓ ଏହାର ପରମ୍ପରାର ଚିର ବିଜୟ ଘଟୁ, ଏହାହିଁ ଏ ଶୁଭ ଅବସରରେ କାମନା ।

'ବନ୍ଦେ ଉତ୍କଳ ଜନନୀ'